# ଭକ୍ତି ଅର୍ଘ୍ୟ



କବୟିତ୍ରୀ

ଶୈଳବାଳା ରଥ

ଗଦାଶିଳା, ଢେଙ୍କାନାଳ

# ଭକ୍ତି ଅର୍ଘ୍ୟ

କବୟିତ୍ରୀ
ଶୈଳବାଳା ରଥ
ଗଦାଶିଳା, ଢେଙ୍କାନାଳ

ମହାଳୟା - ୨୦୦୨

ପ୍ରକାଶକ - ସନ୍ତୋଷ କୁମାର ରଥ
ଗଦାଶିଳା - ଢେଙ୍କାନାଳ

ମୂଲ୍ୟ - ୧୫/-

ମୁଦ୍ରଣ :
ଚନ୍ଦ୍ର ଶେଖର ପ୍ରେସ୍
କୁଞ୍ଜକାନ୍ତ, ଢେଙ୍କାନାଳ

# ସୂଚୀପତ୍ର


| | | |
|---|---|---|
| ୧. | ପ୍ରେମର ଠାକୁର | ୧ |
| ୨. | ଚିରନ୍ତନ ଶାନ୍ତି | ୧ |
| ୩. | ମିନତୀ | ୨ |
| ୪. | ଶ୍ରୀ ଗିରିଟେକା | ୨ |
| ୫. | କହ୍ନାଇଁ | ୩ |
| ୬. | ବେଦନା | ୪ |
| ୭. | କାଳିଆ ସୁନା | ୪ |
| ୮. | ଦୁର୍ଗାମାଧବ | ୫ |
| ୯. | ଦୁଃଖିନୀ | ୬ |
| ୧୦. | ବନମାଳି | ୬ |
| ୧୧. | ଚକାଆଖି | ୭ |
| ୧୨. | ମନଚୋର | ୮ |
| ୧୩. | ତ୍ରିପୁରାରୀ | ୮ |
| ୧୪. | ସବୁ ତୁମ ସୃଷ୍ଟି | ୯ |
| ୧୫. | ଭଜ ଶ୍ରୀପତି | ୧୦ |
| ୧୬. | ପିତବାସ | ୧୦ |
| ୧୭. | ଜଗା କାଳିଆ | ୧୧ |
| ୧୮. | ଜୟଗୁରୁ | ୧୨ |
| ୧୯. | ତରାଇ ଭାଇ | ୧୨ |
| ୨୦. | କହ୍ନେ ଗୋବିନ୍ଦ | ୧୩ |
| ୨୧. | ଜୟଗୁରୁ | ୧୪ |
| ୨୨. | ପରମାନନ୍ଦ | ୧୫ |
| ୨୩. | କମଳ ନୟନ | ୧୫ |
| ୨୪. | ଛଇଳ-କାହ୍ନା | ୧୬ |
| ୨୫. | ମନ ମୋହନ | ୧୭ |
| ୨୬. | ଗୁରୁପଦ | ୧୭ |
| ୨୭. | ଦୟାନିଧି | ୧୮ |
| ୨୮. | ବେଦନା | ୧୯ |
| ୨୯. | କୃଷ୍ଣ ମୋର ଧନ | ୧୯ |

୩୦. ଅନ୍ତର୍ଯ୍ୟାମୀ ୨୦
୩୧. ଚିନ୍ତାମଣି ୨୧
୩୨. ରାଧାରାଣୀ ୨୧
୩୩. ନିଳାଦ୍ରୀ ବିହାରୀ ୨୨
୩୪. କାଳିଆ ସୁନା ୨୩
୩୫. ଶ୍ରୀନିବାସ ୨୪
୩୬. ପତିତ ପାବନ ୨୫
୩୭. ଦୁଃଖ ନାଶନ ୨୬
୩୮. ପରମେଶ୍ୱର ୨୭
୩୯. ପରମବ୍ରହ୍ମ ୨୭
୪୦. କଳା ଭଅଁର ୨୮
୪୧. ବାଙ୍କ ଚୁଳିଆ ୨୯
୪୨. ନୀଳମାଧବ ୩୦
୪୩. ଶରୀର ତତ୍ତ୍ୱ ୩୧
୪୪. ଶ୍ରୀରାମ ୩୨
୪୫. ରଘୁ ରାମ ୩୨
୪୬. କାଳୀଦଳା ୩୩
୪୭. ବଳିଆର ଭୂଜ ୩୪
୪୮. ଦୀନବାନ୍ଧବ ୩୪
୪୯. ଦୟାମୟ ୩୫
୫୦. କାଳିଆ ରାଜା ୩୬
୫୧. ନଟନାଗର ୩୭
୫୨. ଦୟାନିଧି ୩୮
୫୩. କରୁଣାକର ୩୯
୫୪. ଜୟଜଗନ୍ନାଥ ୩୯
୫୫. ଭାବବିନୋଦିଆ ୪୧
୫୬. ବନ୍ଦନା ୪୧
୫୭. ଜଣାଣ ୪୨
୫୮. ଜଣାଣ ୪୬
୫୯. ମଙ୍ଗଳା ସ୍ତୁତି ୪୭
୬୦. ଜଣାଣ ୪୯

(୧)
## ପ୍ରେମର ଠାକୁର

ପ୍ରେମର ଠାକୁର ପ୍ରେମ କାରବାର
ପ୍ରେମତ ଅମୂଲ୍ୟ ଧନ,
ତୁମ ପ୍ରେମ ବଳେ ଦିନ କାଟେ ହେଳେ,
କରି ପ୍ରେମାମୃତ ପାନ ।। ୦ ।।
ତୁମ ପାଦଧ୍ୟାୟି ତୁମ ମାନ ଗାଇ
କଟାଇ ଦେବି ଜୀବନ,
ସଂସାର ତରଣୀ ବାହିବି ହେ ପୁଣି
କରି ଜୟ-ଗୁରୁ ଗାନ ।। ୧ ।।
ସେ ମଧୁପିୟୂଷ ପିଇ ହେବି ତୋଷ
କଟିବ ଭବ ବନ୍ଧନ୍,
ଆଶାୟି ପରାଣେ ମାଗେ ଦୀନା ଜଣେ
(ପ୍ରଭୁ) ଆଶା ମୋ କର ପୂରଣ ।। ୨ ।।

(୨)
## ଚିରନ୍ତନ ଶାନ୍ତି

ନଜାଣେ ସ୍ଥିତି ନଜାଣେ ମୁକ୍ତି ନଜାଣେ ଗତି ।
ଜାଣେ ମୁଁ ଗୋ ନବ ଜଳଧର ଶ୍ୟାମ ମୋ ସ୍ଥିତି ।।
ଗତି ମୋ ଶ୍ରୀକୃଷ୍ଣ ଛଡା ତୁଳସୀ ମଧୁ ବାସ ।
ମୋ ଉଲ୍ଲାସ ନିରଦ ତନୁର ନିଟୋଳ ହସ ।।
ମୋ ମାଦକ ଭରା ଉତ୍ତେଜନା କୃଷ୍ଣର ନାମ ।
ବେସୁରା ରାଗିଣୀର ସେ ଛନ୍ଦ ଅନୁପମ ।।
ତା ଭୁରୁଭୁରୁ ଚନ୍ଦନ ଗନ୍ଧ ମୋର ପାଥେୟ ।
ତା ମଣି କଙ୍କଣ ଘେରା ସୁବାହୁରେ ମୋଲୟ ।।
ତା ସୁଝଟ ପିତପଟ ମୋ ଜୀବନ ଛାଉଣୀ ।
ତା ଚରଣ ଘୁଂଘୁର ଗୋ ଭାବେ ମୋ ମଥାମଣି ।।
ସେ ରକ୍ତ ପଦ୍ମ ପାଦ ତଳରେ ଆକାଙ୍‌କ୍ଷିତ ମୁକ୍ତି ।
ଦଗ୍ଧ ଅନ୍ତର ଲୋଡେ ସେଠି ଚିରନ୍ତନ ଶାନ୍ତି ।।

(୩)

## ମିନତୀ

କାଳ କୃଷ୍ଣ ଚତୁର୍ଦ୍ଦଶୀରେ ଖୋଜେ ଚତୁର୍ଦ୍ଦଶ ପୁରେ,
କାହି ମୋ ପ୍ରିୟ ଶୂଳ ପାଣି ।।
ଜଟାଧରାୟ, ଫଣିଭୂଷଣାୟ, ଗୌରୀକାନ୍ତାୟ
ଭୂଧରାଧର ଚନ୍ଦ୍ରମଣି ।।
ଧ୍ୟାନମଗ୍ନାୟ, ଯୋଗାଧିମୟହର, ତାଣ୍ଡବପ୍ରିୟ
ଚକ୍ଷୁ ଆନତ ଦେବମଣି ।।
ଭସ୍ମ ଲେପାୟ, ଜାହ୍ନବୀପ୍ରିୟ, ଶ୍ରୀ ଡମ୍ବରୁ ଧରାୟ,
ସକଳ ମଙ୍ଗଳର ଖଣି ।।
ରୁଦ୍ରାକ୍ଷପ୍ରିୟାୟ, ଶିରଶି ବିଲ୍ୱପତ୍ର ମଣ୍ଡିତାୟ,
ଦୁଃଖ ହାରି କଲ୍ୟାଣ କାମୀ ।।
ଧବଳ ବର୍ଣ୍ଣାୟ, ବୃଷଭପ୍ରିୟ, ବ୍ୟାଘ୍ରଚର୍ମ ଘେରାୟ,
ଆସବାରେ ଦୋଷ ମୋ କ୍ଷମି ।।
ପାପ ଘେରା ଅନ୍ତରରେ ଡାକେ କରୁଣ ଭାବରେ
ଅବହେଳିତା ଶୈଳମଣି ।।

(୪)

## ଶ୍ରୀ ଗିରିଟେକା

ଜୟ ବ୍ରଜେଶ୍ୱରୀ କାହ୍ନୁ ମନହାରୀ
ଜୟ ଜୟ ଶ୍ରୀ ରାଧିକା ,
ଜୟ ବ୍ରଜେଶ୍ୱରୀ ରାଧା ମନଚୋର
ଜୟ ଜୟ ଶ୍ରୀ ଗିରିଟେକା ।।
ଘୋର ଅନଳୁ ରଖିଲ ଗୋପକୁ,
କଥା କଥାକେ ମାରିଲ ବକାକୁ
ନୀଳ ଯମୁନାରେ ବାହିଲ ନଉକା,
ଜୟ ଜୟ ଶ୍ରୀ ଗିରିଟେକା ।।

ପାଞ୍ଚଦିନେ ଶୋଷିଲ ପୂତନାକୁ,
ବାଳକାଳୁ ଭାଙ୍ଗିଲ ଜାମଳାକୁ ,
ଗୋଲବସର ହେ ଯଶୋଦା ଟୋକା,
ଜୟ ଜୟ ଶ୍ରୀ ଗିରିଟେକା ।।
ଲଗାଇଲ ତୁମେ ପ୍ରୀତି ମଧୁର,
ପାଗଳ କରିଲ ଗୋପୀ ଗୋପାଳ ,
ପଦ୍ମପାଦେ ମନ ରଖିଲେ ଏକା,
ଜୟ ଜୟ ଶ୍ରୀ ଗିରିଟେକା ।।
ଚମ୍ପକ ବରଣି ଶ୍ରୀ ରାଧିକା ରାଣୀ,
ତୁମ ପ୍ରେମରେ ହେଲେ ସେ ବାୟାଣି ,
କରିଲ ତାକୁ ତ ପ୍ରାଣ ନାୟିକା,
ଜୟ ଜୟ ଶ୍ରୀ ଗିରିଟେକା ।।

(୫)

## କହ୍ନାଇଁ

କୃଷ୍ଣକୁ ମୁଁ ଭଲପାଇ, ହେଲି ମୁଁ ମଉଳା କଇଁ ।
ଚାହିଁ ଚାହିଁ ତା ସରଣୀ, ମୁଦିଲି ନୟନ ବେନି ।।
ବେଦନା ଆତୁରାଘରେ, ଝୁରିଲି ପ୍ରାଣ ବିକଳେ ।
ନୟନୁ ମୁଁ ନୀର ଦେଇ, କାନ୍ଦିଲିତ କଇଁକଇଁ ।।
କେହିତ ଶୁଣିଲେ ନାହିଁ ନିରିମାଖି ହେଲି ମୁହିଁ ।
ଜଗତ କରେ ଟାପରା, କାହିଁ ତୋର ଗିରିଧରା ।।
କାହିଁ ତୋର ଦୟାନିଧି, ଚାହିଁଛୁ କିମ୍ପା ଅବଧି ।
ତଥାପି ମନକୁ ଦେଇ , ଡାକୁଛି କଳା କହ୍ନାଇ ।।
ଏ ମର୍ତ୍ତ୍ୟ ଭୁବନେ ଥାଇ, ଡାକିବି ମୁଁ ତୁହାଇ ତୁହାଇ ।
କହ୍ନାଇଁ ରେ ମୋ କହ୍ନାଇଁ ।।

(୬)

## ବେଦନା

ହୃଦୟ ବେଦନାରେ, ମନର ଝଡ ଝଞ୍ଜାରେ
ଖୋଜିଲି ତୋ ରୂପ,
ରଙ୍କୁଣି ମୁଁ ଖୋଜିଖୋଜି, ଆଙ୍କିଲି ଜତନେତୋ,
ସୁଲଳିତ ଛାପ ।
ତୋ ଘନ କଳା କୁଞ୍ଚିତ, ଚୂର୍ଣ୍ଣ କୁନ୍ତଳେ ଖଂଜି
ରକ୍ତର ଗୋଲାପ,
ନିରେଖି ଦେଖିଲି, ଜାଗରିତ ଶତଚକ୍ଷୁଧାରେ,
ପକାଇ ଲୋଲୁପ ।
ଜାଳିଦେଲି ଅନ୍ତରରେ ନିଛିଦ୍ର ପ୍ରେମ ଦୀପ,
ହେଲେ କି ସେ କୋପ,
ଯା ପାଇଁ ବାରବାର , ଭିତ ତ୍ରସ୍ତ ନୟନରେ
ନଦେଖେ ସ୍ୱରୂପ ।
ସବୁ ଆଶା କରିତ୍ୟାଗ, ଶୈଳ କହେ ମନ ଦୁ
କୃଷ୍ଣ କୃଷ୍ଣ ଜପ ।।

(୭)

## କାଳିଆ ସୁନା

ପ୍ରାଣ ସଙ୍ଗୀତରେ ତୋ ହୃଦ ବ୍ରଜକୁ ଅନା ।
ବ୍ରଜ ସୁନ୍ଦର ମୋହନ (ଶ୍ରୀ) କାଳିଆ ସୁନା ।।
ତା ପାଦ ଧୂଳି ପଡି, ଗୋକୁଳ ଯାଏ ବୁଡି।
ନିରେଖି ସାଉଁଟି ତୋଳ ନୁହଁ ବିମନା ।।
ପ୍ରାଣ ସଂଗାତରେ -----।।୧।।
ପାରିଲେ ସେ ଧୂଳି ମାଖି, ହେବୁ ନାହିଁ କେବେ ଦୁଃଖି
ତିଳକ ପରି ମଥାରେ, ଭାବେ କର ଘେନା ।
ପ୍ରାଣ ସଂଗାତରେ -----।।୨।।

ଜୀବ ଯିବ ଯେତେବେଳେ, ଭଜିବୁ ତୁ ବାରେ ବାରେ
ସେ ଧୂଳି ପରଶେ ଉଡିବୁ ନମାନିମନା ।
ପ୍ରାଣ ସଂଗାତରେ -----।।୩।।
ଷଡରିପୁ ସବୁ ହୋଇଯିବେ ସତେ କାବୁ
ମୁଁହରେ ବାନ୍ଧିବେ ସଭିଏଁରେ କଳା କନା ।
ପ୍ରାଣ ସଂଗାତରେ ------।।୪।।
ସେ କେଙ୍କୀ ପରବନ୍ଧା ପ୍ରେମେ ହେବୁ ଦୁ ବନ୍ଧା ।
ଛନ୍ଦା ଚରଣ ଧ୍ୟାୟୀଶୈଳ କହେ ଉଡାତୁ ବିଜୟବାନା
ପ୍ରାଣ ସଂଗାତରେ ------।।୫।।

(୮)

## ଦୁର୍ଗାମାଧବ

ଆଜି କୁସୁମେ ହୋଇ ସୁବେଶ
ଉମା ମାଆ ମୋର ସାଜିଛି ବେଶ
ମଥାରେ ତାହାର ମୟୂର ପର
ନାଲି ଓଡଣୀରେ ନାଲି ସିନ୍ଦୁର
ଗଳାରେ ତାହାର ମନ୍ଦାର ମାଳ, ।
ହସ୍ତରେ ବଂଇଶୀ ତ୍ରୀଶୂଳ ଧରି,
କରୁଣା ସତେତ ଦେଉଛି ଢାଳି,
ଦେହେ ଜଡାଇଛି କଳାପତନି
ନୟନେ କଜ୍ଜଳ ଘେନିଛି ପୁଣି ।
ଗଜ ଗମନି ପଦେ ଅଳତା ଧାର
ଉଜ୍ଜଳ ଦିଶଇ ନାଲି ସିନ୍ଦୁର
ସବୁ ସମ୍ପଦ ମୋ ତାପାଦେ ଠୁଳ
ସିଏ ତ ମୋହର ଦୁର୍ବଳ ବଳ ।
ତା ପାଇଁ ହୁଏ ମୁଁ ପରି ପ୍ରକାଶ
କଲ୍ୟାଣ ମୟୀ ଚିର ହସହଁସ
ଦୁର୍ଗାମାଧବ ବାରେ ଆସ ମୋ ପାଶ
ପୂରାଅ ମନର କ୍ଷୁଧିତ ଆଶ ।

(୯)

## ଦୁଃଖିନୀ

ଭାବୁକ ନିକଟ ଅଭାବକୁ ଦୂର
ଭାବି ଭାବି ଦିନ ସରିଯାଏ ମୋର ।।୧।।
କାହିଁକି ଆସନି ହେ ଠଣ ସୁନ୍ଦର
ଦିନେ ହେଲେ ମନେ ପଡେନି ତୁମର ।।୨।।
କିଏ ଜଣେ ଅଛି ଦୁଃଖିନୀ ଶଇଳ
ଷଡରିପୁ ତାକୁ କରନ୍ତି ବିକଳ ।।୩।।
ମନର ମୀନାର ଭାଙ୍ଗିଯାଏ ତାର
ଚୁନାଚୁନା କାମନା ଏକତ୍ରି ବର ।।୪।।
ମଛି ଦ୍ୟନ୍ତି ଖୁଆ ଦଣ୍ଡେ ଅନ୍ତର
ନୟନେ ତା ମାୟା ନିଦ୍ରାର ବିହାର ।।୫।।
ତୁମକୁ ଡାକି ପାରେନା ସଂଜ ସକାଳ
ହେ ଶକ୍ତିମୟ ପ୍ରଭୁ ଠଣ ସୁନ୍ଦର ।।୬।।
ସବୁ ଦୁଃଖ ଛେଦିବାକୁ ନାହିଁ (କି) ବଳ
ଦୁଃଖିନୀର ଦୁଃଖ ହୋଇଲ ଅଚଳ ।।୭।।
ତୁମେ ପରା ପ୍ରଭୁ କ୍ଷମାର ସାଗର
କ୍ଷମା ଦେଇ ଅଧମେ କର ଉଧାର ।।୮।।

(୧୦)

## ବନମାଳି

ଭାବିଥିଲି ଦୁଃଖିନୀ ମୁଁ ମନେମନେ ଦିନେ
ଆଣିବି ହସ୍ତଧରି ମୋ ମନ ବୃନ୍ଦାବନେ ।।୧।।
ହୃଦ ଗାଲିଚା ପରେ ବସାଇବି ଜତନେ
ନିରେଖିଂ ଚାହିଁବି ତା ମଧୁ ବୋଲା ଲପନେ ।।୨।।
କରିବିନି ପୂଜା ମୁଁ ରଦେଇ ଅଳିକ ନୈବେଦ୍ୟ
ପୂଜିବିନି ସଂସାରର ପୁଷ୍ପେ ସେ ରଙ୍ଗପଦ ।।୩।।

ଅନ୍ତର ରସ ନିଗାଡି ବନାଇବି ଖାଦ୍ୟ
କିପରି ଲାଗୁଛି ମିଠା ଚଖାଇବି ସ୍ୱାଦ ।।୪।।
ପ୍ରାଣ ରମ୍ଭା ବୃକ୍ଷୁ ଧିରେ ଛଡାଇଣ ପଟ
ପ୍ରିତୀ ପୁଷ୍ପେ ଗୁଛି ଦେବି ପଟଳୀ ମୁକୁଟ ।।୫।।
ଆତ୍ମା ହିରା ମାଳେ ସୁନ୍ଦର ଦିଶିବ କଣ୍ଠ
ଚୈତନ୍ୟ ହରାଇ ଚାହୁଁଥିବି ମଟମଟ ।।୬।।
କୃଷ୍ଣ କୃଷ୍ଣ ଡାକିବି ଖାଲି ଲଳିତ ତାନେ
ପ୍ରେମସାଗରେ ମଜିବି ତା ବଂଇଶୀ ସ୍ୱନେ ।।୭।।
ମାୟାଜାଲ ନକଟିବତା କରୁଣା ବିନେ
ମନ ଧ୍ୟାନେ ପୂଜୁ ଥିବି ଶ୍ରୀ ପଦ୍ମଚରଣେ ।।୮।।

## (୧୧)

# ଚକାଆଖି

ଦେଖିଲି ମୁଁ ତୋତେ ସବୁଜ ବନାନୀରେ
ଦେଖିଲି ପୁଣିରେ ମୁଁ ଶାଗୁଆ କ୍ଷେତରେ
ନବୀନ କାନନେ ଦେଖିଲି କୁସୁମରେ
ଦେଖିଲି ମଧୁଚୋରା ସେ କଳା ଭଅଁରରେ ।୧।
ଟିକି ଚଢ଼େଇର ଟିକି ଦେହର ମଧ୍ୟରେ
ଦେଖିଲି ବୃକ୍ଷ ଘେରା ଘଞ୍ଚ ପର୍ବତରେ
ଅନୁଭବ କଲି ପୁଣି ପ୍ରପଞ୍ଚ ସଂସାରେ
ଜନବହୁଳ ଏହି ନଶ୍ୱର ଧରାରେ ।୨।
ଚାହିଁଲି ଆକାଶ ପବନ ସୂରୁଜରେ
ଚାହିଁଲି ତାରା ଭରା ରୂପେଲି ଚାନ୍ଦରେ
ଭାବିଲି ସୀମାହୀନ ଶୁଷ୍କ ମରୁଭୂମୀରେ
ନିରେଖିଲି ବେଳାଭୂମି ନୀଳ ସମୁଦ୍ରରେ ।୩।
ଚାହିଁଲି ମେଘନାଦ ପାଚେରୀ ଭିତରେ
ଚାରିଆଡେ ଦେଖେ ଚକାଚକା ଆଖିରେ
ସମସ୍ତ ସୃଷ୍ଟି ତୋର ସୁଗୋଲ ହସ୍ତରେ
କିନ୍ତୁ ହାୟ, ଦେଖେନି ମୁଁ ହୃଦ ମନ୍ଦିରରେ ।୪।

(୧୨)

## ମନଚୋର

କିଏ ଗୋ ତୁମେ ମୋ ମନରାଜ୍ୟେ ମନଚୋର ।
ସବୁ ନିଃଶେଷ କରି ଚୋରି କଲ ମୋ ଅନ୍ତର ।। (୧)
ଚୋରି କରି ଚାଲିଗଲ , ଗଲ ବହୁଦୂର ।
ବୁଝିଲନି ବାରେ ଦୁଃଖିନୀର ଦୁଃଖଭାର ।। (୨)
ତୁମେ ପ୍ରେମମୟ ପ୍ରେମର ଅଟ ଠାକୁର ।
ଆଜି କିମ୍ପା ପ୍ରଭୁ କରୁଅଛ ସାତ ପର ।। (୩)
ଜାଣନାହିଁ ହେ ଖୋଲି ଦେଇଛି ଗନ୍ତାଘର ।
କିଛି ଗୋ ରଖିନାହିଁ ଡାକିଛି ତୁମରି ପୟର ।। (୪)
ବିଶ୍ୱଗୁରୁ ହେ ଦୃଷ୍ଟି ନଦେଲେ ଦୀନାପର ।
ସୃଷ୍ଟି ଭିତରେ ହେବି ଯେବେ ମୁଁ ଛାରଖାର ।। (୫)
କରୁଣା ନିଧାନ ନିବେଦନ ଘେନ ମୋର ।
ତୁମ୍ଭ ବହ୍ମପାଦ ତଳେ ରଖ ଆଦିମୂଳ ।। (୬)
ଦିବାନିଶି ଜୟଗୁରୁ ଡାକୁଥାଉ ଶଇଳ ।
ଶ୍ରୀଗୁରୁ ଶରଣ ବୋଲି ରଟୁ ନିରନ୍ତର ।। (୭)

(୧୩)

## ତ୍ରିପୁରାରୀ

ଜୟ ପାର୍ବତୀ ବଲ୍ଲଭ ଚନ୍ଦ୍ରମୌଳି ।
ଜୟ ଜାହ୍ନବୀ ଧାରଣ ତ୍ରିପୁରାରୀ ।।
ଭାଲପଟେ ଲମ୍ବିତ ଚନ୍ଦନ ଗାର ।
ଝଲମଲ ଦିଶେତ କର୍ଣ୍ଣେ କୁଣ୍ଡଳ ।।
ଫଁ ଫଁ ଶୁଭେ କଣ୍ଠେ ଫଣିର ଫୁଙ୍କାର ।
ସଅଁ ସଅଁ ଶବ୍ଦ ଶ୍ୱେତ ବୃଷଭର ।।
ବଂ ବଂ ନାଦ ଦୀନ ଭକତ କଣ୍ଠର ।
ସବୁ ଶୁଣି ଥାଅ ବସି ଧ୍ୟାନପର ।।

ଅନ୍ତରୁ ଡାକିଦିଅ କରୁଣାର ଝର ।
ଗୌର ମନୋହର ଜୟ ଶ୍ରୀ ଶଙ୍କର ।।
ଜୟ ଜୟ ଭକ୍ତ ପ୍ରିୟ ମହେଶ୍ୱର ।
ଦୁଃଖ ବିମୋଚନ ଦେବ ଶୂଳହର ।।
ଅକର୍ମ କର୍ମଦାତା ଜୟ ତ୍ରିପୁରାରୀ ।
ମମ ଦୋଷ କ୍ଷମ ଶମ୍ଭୁ ପାତକ ହାରୀ ।।

(୧୪)

## ସବୁ ତୁମ ସୃଷ୍ଟି

ଅନନ୍ତ ଆକାଶ ତୁମରି ପ୍ରକାଶ
ସବୁଠାରେ ତୁମ୍ଭେ ରହିଛ,
ଶଶାଗରା ଧରା ତୁମ ପ୍ରେମେ ପରା
ଆନନ୍ଦରେ ଭରାଇଛ ।୧।
ସବୁଠାରେ ତୁମ୍ଭ ଆଶିଷ କରଣି
ସବୁ ତୁମେ ବନାଇଛ,
ତୁମ୍ଭରି ପରଶେ ତୁମ୍ଭରି ଆଶ୍ୱାସେ
ଏ ଜଗତ ଚଳାଉଛ ।୨।
ତୁମ୍ଭ ସ୍ନେହେ ପରା ଭବନଦୀଧାରା
କଳ କଲ୍ଲୋଳେ ବୁହାଇଛ,
ସବୁ ତିମ ସୃଷ୍ଟି, ସବୁ ତୁମ ତୁଷ୍ଟି
ଭ୍ରମେ କିଆଁ ଭୁଲାଉଛ ।୩।
ମୁଁ ଯେ ଦୀନାହୀନା ତୁମରି ଅଧୀନା
ତାକୁ କିମ୍ପା ପଦେ ଠେଲୁଛ,
ସେଇ ପଦ ଠେଲା ହେଉ ପୁଷ୍ପଭରା
ସେଥିରୁ ଜମା ନମୁରୁଛ ।୪।

(୧୫)

## ଭଜ ଶ୍ରୀପତି

ତୋ ଅନ୍ତ ବାରୁଣାବନ୍ତରେ ଖୋଜ ନିରନ୍ତର
ନୀଳ ନବଘନ ମୂରତୀ
ଆଶାର ପ୍ରଦୀପ ଜାଳି ହୋଇ ତୁ ବାଉଳି
କର ଘନ ଘନ ଆରତୀ ।୧।
କହ ତୁ ସଧିରେ ହେ ମନରାଜା ବଜାତୁ ବାଜା
ସମସ୍ତ ବଳରେ ଝଟତି
ଆଗରେ ରଖି ଗୁରୁ ମୂରତୀ , ଦେଇଣ ମତି
ଲଭ ତୁ ସେ କଳା ସମ୍ପତି ।୨।
ଯାଯାବର ହୋଇ ଆଉ ମିଛରେ ବୁଲ ନାହିଁ
ଘୋଟି ଆସେ ଆମା ରାତି
ଏରାତିରେ ସତେ କିଏ ସେ ଦେବ ତୋତେ
ସେ ଝଲକ ମଣି ଜ୍ୟୋତି ।୩।
ସମସ୍ତ ଭକତି ଦେଇ ଉଚ୍ଛେଡାକ ନିଠାଇ
ଶ୍ରୀ ଗୁରୁଙ୍କୁ ଜଣା ଭାରତୀ
ରେ ଅବୋଧ ଆତ୍ମା ହୁଅନାରେ ଆନମନା
ଭଜ ତୁ ଶ୍ରୀଗୁରୁ ଶ୍ରୀପତି ।୪।

(୧୬)

## ପିତବାସ

ମୁକୁଳା ଏ ମୋର ହୃଦୟ ମନ୍ଦିର
ଆସବାରେ ଦୟାମୟ ପିତବାସ
ସଙ୍ଗେଧରି ନାଗୀ ହୀରା ରାଧାରାଣୀ
ପଙ୍କିଳ ଅନ୍ତରୁ ମୋ କର ଉଲ୍ଲାସ ।।୧।।

ନିର୍ଯ୍ୟାତିତ ଧରାରେ ନିର୍ଯ୍ୟାତିତା ମୁଁ
ଚାହିଁଛି ତୁମ୍ଭଙ୍କୁ ତୁମେମୋର ଆଶ
ବେଦନା ଭିଜା ପ୍ରାଣ ବନ୍ଧୁର ପଥେ
ଛୁଟାଅ ଯୁଗ୍ମ ମୂରତୀ ମଧୁରସ ।।୨।।
ଯୁଗଳମୂରତୀ ମୋ ଜୀବନର ରଶ୍ମି
ଅନ୍ଧନୟନେ ଚାହିଁ ରାତ୍ର ଦିବସ
କୃପାସିନ୍ଧୁ ସୁନ୍ଦରତବ ଦିଅ ଫେଇ
ଏ ଅଧମା ହେଉଥରେ ଆତ୍ମତୋଷ ।।୩।।
ଜଣାଏ ମନ ରାଇଜେ ଚିର ଦୁଃଖୀ
ଅନାମି କୃତଘ୍ନ ତୁମ ତାଲବ୍ୟେଶ
ନିଷ୍ଠୁର ହେବନି ନିଳାଚଳ ନାଥ
ସଙ୍ଗେଧରି ବରୁଣ ଦୁହିତା ଆସ ।।୪।।

(୧୭)

## ଜଗା କାଳିଆ

ନିଷ୍ଠୁର ହେଲକି ନୀଳାଚଳ ନାଥ ଭବରଙ୍ଗିଆ ।
ମୋ ଦୁଃଖ ଟାଣ ଜାଣିଣ ବଧିରକି ଚକାଆଖିଆ ।।
ଗୋରୁଚରା ତୁମେପରା ଚୋର ସରଲବଣି ଖିଆ ।
ଦଗାଦାର ପ୍ରୀତି ଚୋର ଶଠ ତୁମେ ପୁରସ୍ତମିଆ ।।
ଚକାଚକା ଡୋଳାରେ ଆନାଥରେ ଘନକାଳିଆ ।
ମୋତେ ଦେଖି ବାଜୁ ଆଖି ହୋଇଯାଅ ଛାନିଆଁ ।।
କିଛି ମୁଁ ମାଗୁନାହିଁ ହେ ଭାଇ ଭଗିନୀ ସୁହାଗିଆ ।
ମାଗୁଛି କେବଳ ଖାଲି ଜଗନ୍ନାଥ ହେ ତୁମ ପ୍ରେମ ନାଆ।।
ମାଗତା ଲୋକକୁ କରଦୟା ପ୍ରଭୁ ଜଗା କାଳିଆ ।
ସୁଭଦ୍ରା ସହିତ ତିନିମୂରତୀ କରିଥାଅ ଦୟା ।।
ନନେଲେ ନନିଅ ପଛେ ଶ୍ରୀକ୍ଷେତ୍ରେ ବାରେ ଥରେ ଚାହିଁ ।
କରୁଛି ମାଗୁଣି, ଆହେ ବେଣୁ ପାଣୀ, ହେଉଥିବ ସାହା ।।

(୧୮)

## ଜୟଗୁରୁ

ଗୁରୁ ପାଦପଦ୍ମ ଗନ୍ଧରାଶି,
ଆଘ୍ରାଣ କରୁ ଏ ପାତକି ଦାସୀ
ସେ ସୁବାସିତ ମଧୁ ମହକେ,
ନାଚିବି ଆନନ୍ଦେ ଭବ ଭୂଲୋକେ
ଗାଇବି ହରଷେ ପ୍ରଭୁଙ୍କ ଗୀତି,
ଗୁନ୍ଥିବି ମାଳାମୁଁ ଡାକିଣ ପ୍ରୀତି ।୧।
ଲେପିବି ଶ୍ରୀଅଙ୍ଗେ ମନଚନ୍ଦନ
ଚରଣ ଧରି କରିବି ବନ୍ଦନ
ଉଭାଇ ଯିବ ତ ମନ ବିଷାଦ
କାଳିମା ରାହୁ ହୋଇଯିବ ଛେଦ ।୨।
ଉଚ୍ଛୁଳିବ ଓଁ ତରଙ୍ଗ ମାଳା,
ତରିଯିବ ପାପୀ ଶଇଳ ବାଳା ।
ଭାବୁଛି ବସି ସେ ଦିବସ ନିଶି
(ଗୁରୁ ହେ) ପାହିବ କିସତେ ତା ଦୁଃଖନିଶି ।୩।

(୧୯)

## ତରାଇ ଭାଇ

ମୋ ମନ ଅଟଇ ଆତ୍ମାର ଏକକ ସଖା
ଡାକିବ ଆତୁରେ ଜଗାରେ ନଉକା ରଖା ।୧।
କୃପାକର ବାରେ ଥରେ ମୋ କୃପା ବାରିଧି
ପରି ହେବି ମୁହିଁ ସ୍ୱଚ୍ଛନ୍ଦେ ଏ ଭବ ନଦୀ ।୨।
ନଉକା ଆଣ ମୋ କାଳିଆ ତରାଇ ଭାଇ
ସଂସାର ଦାଉକୁ କାହ୍ନୁରେ ଆଉ ନପାରେ ସହି ।୩।
କାଲ ହୁଅନାରେ ତୁ ବନ ଅଜଗର ପରି
କହନ୍ତି ସଭିଏଁ ଶ୍ରୋତା ନାହିଁ କେହି ତୋପରି ।୪।

କାତରେ ଡାକିଲେ ପ୍ରହ୍ଲଳ ପରା ଆସୁ ତୁ ଧାଇଁ
ଆସିଯା ତୋ କୃପା ସାଗରେ, ପଶି ଯିବିରେ ମୁହିଁ ।୫।
ଘୃଣିତା ବୋଲି ମୁଁ ଜଗୁରେ ତୁହି ନଦେଲେ ଦେଖା
ପ୍ରେମ ଅଦାଲତେ ଡାଇରୀ ଦେବି ମୁଁ ଏକା ।୬।
ମୋକଦମା ନଥି ତୋ ନାମେ ହୋଇଯିବତ ଯୋଖା
ସେତେବେଳେ ବୁଝିଯିବୁରେ ମୋର କାଳିଆ ଟୋକା ।୭।

(୨୦)

## ବନ୍ଦେ ଗୋବିନ୍ଦ

ଆହା ମନେ କି ଆନନ୍ଦ, କି ଆନନ୍ଦ,
ଗରୁଡ଼ ବନ୍ଦେ ଗୋବିନ୍ଦ ବନ୍ଦେ
ଗୋବିନ୍ଦ,(ପଦ)
ଶ୍ୟାମଳ ତନୁ ନିନ୍ଦଇ କୋଟୀ ଭାନୁ
ରକ୍ତ କୋକନଦ ଦିଶେ ପଦାରବିନ୍ଦ
ଗରୁଡ଼ ବନ୍ଦେ ଗୋବିନ୍ଦ ।୧।
ଝଲକେ ପଟର୍ଶୀ ମୁକୁଟ ରଞ୍ଜିତ ଓଷ୍ଠ
ମଧୁହାସ ଜୋଛନା ତ୍ରାସ ମନ୍ଦ ମନ୍ଦ
ଗରୁଡ ବନ୍ଦେ ଗୋବିନ୍ଦ ।୨।
ଗଳେ କଉ ସ୍ତୁଭ ହୃଦେ ଭକତି ଭାବ
(ଚଉ) ହସ୍ତେ ଆୟୁଧ ଧରି ଆଜାନୁଲମ୍ବ
ଗରୁଡ ବନ୍ଦେ ଗୋବିନ୍ଦ ।୩।
କଟିରେ ପିତପଟ ପଦେ ଘୁଂଘୁର ନାଦ
ଭକତ ମାନସହରା ସେ ମକରନ୍ଦ
ଗରୁଡ ବନ୍ଦେ ଗୋବିନ୍ଦ ।୪।
ଭଜରେ ମନ ମନି ମନହରା ନାରାୟଣ
ଜପରେ ତୁ ମଧୁସୂଦନ ନିତ୍ୟାନନ୍ଦ
ଗରୁଡ ବନ୍ଦେ ଗୋବିନ୍ଦ ।୫।

(୨୧)

# ଜୟଗୁରୁ

ଗୁରୁ ନାମ ସୁଧାନିଧି ପୋଡୁଛି ହୃଦୟ ଖୋଜି
ବାହାରିବ ଅନ୍ତକାଳେ
ଦାରୁଣ ପ୍ରତାପି ଜମ ନହୋଇବ ଆଉତମ
ପକାଇବନି ଜଂଜାଳେ ।୧।
ପଠାଇବନି ତା ଗଣ ନଦେବ ମୋତେ କଷଣ
ନେଇଯିବ ଗେଲେଗେଲେ
ଶ୍ରୀଗୁରୁ ନାମ ସ୍ମରଣ ଶୁଣି ହେବ ମୂକ ପୁଣ
ତେଜ ତା ମଉଳି ବରେ ।୨।
ଚିତ୍ରଗୁପ୍ତ ତାରମନ୍ତ୍ରୀ ଦେଖିବ ହୃଦୟ ତନ୍ତ୍ରୀ
ଗୁରୁରୂପ ହୃଦେ ଝଳେ
ପାଞ୍ଜି ତାର ଯିବ ପଡି ପାପ ତାପ ଯିବଉଡି
ବୁଡିବି (ମୁଁ) ପ୍ରେମ ସଲିଳେ ।୩।
ଗୁରୁନାମ ଗାଇ ଗାଇ ନେବିତ ତରଣୀ ବାହି
ସେହି (ମୋର) ସାହା ସବୁବେଳେ
ତାଙ୍କରି ଅଭୟ ଥାଇ ପାଇବି କଳାକହ୍ନାଇ
ଚିନ୍ତା କରେ ମୁଁ ଅନ୍ତରେ ।୪।
ତାହାଙ୍କୁ ଦେବା ପାଇଁ କିଛି ତ ମୋହର ନାହିଁ
ତୁଚ୍ଛ ମନଟିକୁ ଡାଳେ ।୫।



(୨୨)

## ପରମାନନ୍ଦ

ମନରେ ----

ପରଦୁଇଲଗାଇ ନେବେ ତୋତେ ଉଡାଇ
ପରୀ ପରି ଉଡିଯିବୁ
ପରମାନନ୍ଦଙ୍କର , ପଦ ସ୍ମରଣ କର
(ଯେବେ) ପ୍ରପଞ୍ଚେ ନବୁଡିବୁ ।୧।
ପାଞ୍ଚ ମନକୁନେଇ ପ୍ରାଣ ତନ୍ତ୍ରୀରେ ଥୋଇ
ପ୍ରେମେ ମଗନ ହେବୁ,
ପଚିଶ ପ୍ରକୃତିକୁ ଏଡାଇ ଦେଇ ତାଙ୍କୁ
ପ୍ରଭୁଙ୍କ ପଦେ ସେବିବୁ ।୨।
ପରମ ଆତମାରେ ପଶତୁ ବାରେବାରେ
ପରମ ଆତ୍ମା ଚିହ୍ନିବୁ
ପାଇ ପାରିଲେ ତାଙ୍କୁ ପାରି ହୋଇବୁ ଭବୁ
ପଙ୍କିଳତାକୁ ଛାଡିବୁ ।୩।
ପାଇ ପାରିଲେ ଯାଇ ନିସ୍ତାରି ଯିବୁ ତୁହି
ପାଶୋରି ଦୁଃଖ ସବୁ
ପଦ୍ମନାଭଙ୍କୁ ଚିନ୍ତି ପ୍ରୀତିରେ ପ୍ରିତି ଯୋଖି
ପ୍ରଫୁଲ୍ଲେ ନାମ ଗାଇବୁ । ।୪।
ପାଦେ ଦେଲେ ଭରସା ପୁର୍ଣ୍ଣ ହେବ ତୋଆଶା
ପାପୀ ଶୈଳେ ଆସି କହିବୁ ।୫।

(୨୩)

## କମଳ ନୟନ

କମଳ ନୟନ, ଅନନ୍ତ ଶୟନ କମଳା ଚାପନ୍ତି ଚରଣ
କମନୀୟ କାନ୍ତି, ଅପରୂପଜ୍ୟୋତି, କହେଇନ୍ଦ୍ର ବ୍ରହ୍ମାବରୁଣ ।୧।

କଞ୍ଜ ଚରଣରେ ମଧୁଧାର ଝରେ କରୁଛନ୍ତି ସରବେ ପାନ
କଇଳାସ ପତି, ଉଭାହୋଇଛନ୍ତି, କରେ ତ୍ରୀଶୁଳ ଧରିଣ ।୨।
କରେ ବେଦ ପାଠ ବ୍ରହ୍ମାଚତୁର୍ମାଥ, କଳରବ ସ୍ୱର କରିଣ
କଳିହା ନାରଦ, ବାଇବୀଣାବାଦ୍ୟ, କରନ୍ତି ମଧୁର ଗାନ ।୩।
କରକ ରଦନୀ ସାଗର ଦୁଲଣୀ, ପରଷନ୍ତି ମୃଦୁ ବ୍ୟଞ୍ଜନ
କରନ୍ତୁ ଆଶିଷ, ହୋଇହସହସ, ଚିର ସୁଖିହେଉ ଭବନ ।୪।
କହେ ଶୈଳବାଳା ହୋଇଣ ଆତୁରା
କରହେ ସଂକଟ ମୋଚନ ।୫।

(୨୪)

## ଛଇଳ - କାହ୍ନା

ଛଇଳା ଟୋକାଟା ଛଟକେ ଆସିଲା
ଛିନିଛତ୍ର କରି ମାଠିଆ ଭାଙ୍ଗିଲା ।।
ଛପିଛପି କେଉଁଠାରେ ସେ ରହିଲା
ଛନ୍ଦେ ଛନ୍ଦେ ଧିରେ ମୁରଲୀ ବାଇଲା ।।
ଛକେ ଛକେ ମନ ମୋହରି ମୋହିଲା
ଛାଡି ଲାକଭୟ ମୋନାମ ଗାଇଲା ।।
ଛାଡି ସଖୀସଙ୍ଗ ଚିତ୍ତ ମୋ ଲାଖିଲା
ଛନଛନେ ରତି ରସରେ ମୋହିଲା ।।
ଛ ହାତରେ ପାଦ ମୋହର ପଡିଲା
ଛନ୍ଦ ହରା ହୋଇ ମୋ ପ୍ରାଣ କାନ୍ଦିଲା ।।
ଛି କରି କଳସୀ ରାଇ ଫୋଡିଲା
ଛଟକେ କୁଞ୍ଜରେ ସଙ୍ଗେ ସେ ମିଳିଲା ।।
ଛରେ ଲେଖି ଶୈଳ ତାକୁ ନିରେ ଖିଲା ।।

(୨୫)

## ମନ ମୋହନ

ହରିଣାକ୍ଷୀ ଦିନେ ବୋଲନ୍ତି ସଖି
ହରିଙ୍କୁ ବୃନ୍ଦାବନେ ଯିବାଟି ଦେଖି
ହରିଲେ ମୋର ସେ ତ, ମନମାନସ
ହଜିଲା ସକଳ ବୁଦ୍ଧି ହେଲାତ ଧ୍ୱଂସ ।।
ହେଲି ମଉଳା ବନ କୁସୁମ ପରି
ହେଜିଲି ନୟନେ ମିଛେ ସେ ରୂପଶିରୀ
ହେଜୁଛି ଆଜିଗୋ ବସି ମୁଁ ମନେ ମନେ
ହୋଇଛନ୍ତି କି ମହାନ ଠକ ସେ ଜଣେ ।।
ହୋଇଥାନ୍ତି ଯେବେ ମୁହିଁ ଚନ୍ଦ୍ରାବଳୀ
ହୋଇନଥାନ୍ତି କେବେ ଏପରି ହାଉଳି
ହୋଇବନି ଆଉ ତାଙ୍କ ଦରଶନ
ହୋଇଯିବି ଦରଦି ଚକୋରୀ ସମ ।।
ହିତରେ ଥାଆନ୍ତି ପରାସେ ସଭିଙ୍କରି
ହିନିମାନ କିମ୍ପା ହେବ ରାଇ କିଶୋରୀ
ହିନସ୍ତା ନକରି ପ୍ରଭୁ ଆସିବେ ଥରେ
ହିସାବେ ଶଇଳ ବାଳା କହେ ଆତୁରେ ।।

(୨୬)

## ଗୁରୁପଦ

ଯନ୍ତ୍ରଣାର ପଦାଘାତରେ , କାନ୍ଦେ ଆଜଗୁରୁକନ୍ୟା
ଦୁଃଖକୁ ନିଗାଡ଼ି ପଦ ଧୋଉଛିରେ କାହ୍ନା ॥
ହୃଦୟେ ଉଠୁଛି ଝନ୍‌ଜା ବୁହାଏ ବିଷାଦ ବନ୍ୟା
ହେ ପରୀକ୍ଷକ ପରୀକ୍ଷାର ପାତ୍ରୀ ନୁହଁଇତ ହୀନା ॥

ପ୍ରେମମୟ୍ ଦେଇତବପ୍ରେମ କର ତାକୁ ଧନ୍ୟା
ବାର ବାର କରନି  ହେ ଗୁରୁ ସଂସାରେ ପଥବଣା ॥
କାନ୍ଦେ ଗୁମୁରି ଗୁମୁରି ଜଗତ ଦିଏ ଉଲୁଗୁଣା
କିଛିନାହିଁ ତାର ଖାଲି ଝରିଯାଏ ଲୁହର ଝରଣା ॥
ଅଶ୍ରୁ ନୀରେ କରୁଛି ସେ ପଦଯୁଗ୍ମକୁ ମାଜଣା
ସେହି ତା ଶେଷ ସମ୍ବନ୍ଧ ସେହି ତାର ଭକ୍ତି ସୁନା ॥
କାନ୍ଦି କାନ୍ଦି ଆତ୍ମାତାର ହେବ କ୍ଷୁଦ୍ର ଧୂଳିକଣା
ଉଡିଯାଇ ପଡିବ ସେଗୁରୁପଦେ, ନଥିବତ ଜଣା ॥
ଚମକି ଚାହିଁବେ ବିଶ୍ୱଗୁରୁ, ଏଇତ ମୋହର କନ୍ୟା
କୋଳେଇ ନେବେ ଶଇଳେ କରି ଦୋଷ କ୍ଷମା ।।

(୨୬)

## ଦୟାନିଧି

ଡାଳିଦିଏ ପଦେ ତବ ଦୁଇ ଟୋପା ଲୁହ
ଡାଳିଦିଏ ହୃଦୟର ଯେତେସବୁ କୋହ ।୧।
ଡାଳିଦିଏ ଅନ୍ତରର ଅକୁହା ସେ କଥା
ଡାଳିଦିଏ ପରାଣର ଲୁକାୟିତ ବ୍ୟଥା ।୨।
ଡାଳିଦିଏ ଆବେଗରେ ମନ ଚଇତନ
ଡାଳିଦେଇ ଡାକେବାରେ ଆସ ମୋର ଧନ ।୩।
ଡାଳିଦିଅ ଦୁଃଖିନୀରେ ପ୍ରେମର ସଲିଳ
ଡାଳି ପ୍ରାଣ କରିଦିଅ ଚିର ସୁଶୀତଳ ।୪।
ଡମା ଅଟେ ପରିବାର ସେନେହ ମମତା
ଡମ ଡମ ବାଜେ ଦୁଃଖ ଆରତ ବାଜାଟା ।୫।
ଡାମଣା ପରି ପଶିବି ତୁମରି ପାଖରେ
ଡାଳେ କରୁଣା ବରଷି ଦିଅ ମୋ ଉପରେ ।୬।
ଡକା ବଜା ପ୍ରଭୁ ଛଡା କିଏ ଅଛିକୁହ
ଡମାଳି ଖାଇ ଜଣାଏ ଶଇଳର କୋହ ।୭।

(୨୮)

## ବେଦନା

କାହିଁକି ଏତେ ଲେଖେ, କିଏ ସେ ଅବା ଦେଖେ
ନିଷ୍ଠୁର ଦେବତା ସେହି
ଲୁହ ଝରଣା ଆସେ, ମନ ମୋ ତହିଁ ଭାସେ
ଥଳକୂଳ ପାଏ ନାହିଁ ।।୧।।
(ଝରି) ଝରଣା ଆସେ ଶୁଖି, କେ ହିତ ନଆସେ ଦେଖି
ଝୁରି ଝୁରି ମରେ ମୁହିଁ
ଦେଖି ଭକତ କଷଣ, ନିଷ୍ଠୁର ହୃଦୟ ପୁଣ
ଯାଆନ୍ତି ପାଷାଣ ହୋଇ ।।୨।।
ମନ କଥା ମନେ ମରେ ଦୁଃଖିନୀ କନ୍ୟା ଝୁରେ
ମନର ବେଦନା ଦେଇ
ଦୁଃଖ ଆସଇ ମାଡି ଧରିଣ ମାୟା କୁହୁଡି
ତାରିବାକୁ କେହି ନାହିଁ ।।୩।।
କିଏ ସେ ଦେବ କହି ପ୍ରଭୁଙ୍କୁ ମୋହର ଯାଇ
କାନ୍ଦେ ମୁଁ କେ କଇଁ କଇଁ
ଆସହେ ଜଗତ ସାଇଁ କିଛିତ ମାଗିବି ନାହିଁ
(କେବଳ) ରହିବି ଶ୍ରୀପଦଧ୍ୟାୟୀ ।।୪।।

(୨୯)

## କୃଷ୍ଣ ମୋର ଧନ

କୃଷ୍ଣ ଭୁବନ ପାଳକ କୃଷ୍ଣ ମୋର ଧନ
କୃଷ୍ଣ କୃଷ୍ଣ ଗାଇ ଗାଇ ଯାଉ ଏ ଜୀବନ ।।୧।।
କୃଷ୍ଣ ମୋର ଆପଣାର ବନ୍ଧୁ ସଖା ଗଣ
କୃଷ୍ଣ ମୋର ଧନଜନ କୃଷ୍ଣ ମୋ ପରାଣ ।।୨।।
କୃଷ୍ଣ ମୋର ସହୃଦୟ ମୋ ରଙ୍କରତନ

କୃଷ୍ଣ ଟୀର ବାଞ୍ଛିତ ତୃଷ୍ଣା କରିବ ପୂରଣ ।।୩।।
କୃଷ୍ଣ ମୋ ଇପ୍‌ସିତ ବସ୍ତୁ କୃଷ୍ଣ ମୋର ମନ
କୃଷ୍ଣ ସକଳ ବିଭବ, କୃଷ୍ଣ ମୋନୟନ ।।୪।।
କୃଷ୍ଣ ମୋ ମୋତି ମାଣିକ୍ୟ, ଅମର ଭୁବନ
କୃଷ୍ଣ ସ୍ୱର୍ଗ କୃଷ୍ଣ ପାତାଳ ଧରା ଭୂଷଣ ।।୫।।
କୃଷ୍ଣ ନାଗ କୃଷ୍ଣ ଯକ୍ଷ କୃଷ୍ଣ ଦେବଗଣ
କୃଷ୍ଣ ସକଳ ଆଧାର କୃଷ୍ଣ ସର୍ବ ଜ୍ଞାନ ।।୬।।
କୃଷ୍ଣ ତ୍ରାଣ କର୍ତ୍ତା ଫିଟାଇ ଏ ବନ୍ଧନ
କୃଷ୍ଣ ଭବ ସାଗରୁ କରି ମୋତେ ତାରଣ ।।୭।।
କୃଷ୍ଣ ନାମ ଅଟଇ ତ ମୁକ୍ତିର କାରଣ
କୃଷ୍ଣ ରଙ୍ଗା ଚରଣରେହେବି ମୁଁ ବିଲୀନ ।।୮।।

(୩୦)

## ଅନ୍ତର୍ଯାମୀ

ଅନ୍ତର୍ଯାମୀ ଗୁରୁ ମୋତେ ଦିଅ ଚିର ମୁକ୍ତି
ବିଦଗ୍ଧ ଅନ୍ତର ପ୍ରଭୁ ଲଭୁ ଚିର ଶାନ୍ତି ।।୧।।
କାନ୍ଦିବାକୁ ଆଉ ବଳ ନାହିଁ ମୋର ନାହିଁ
ଶୁଖିଯାଏ ନୟନର ଲୁହ ଭରା ନଇ ।।୨।।
ଏ ପୋଡା ପରାଣ ଆଉ କେତେ ଦିନ ଥିବ
ତୁମକୁ କହିବା ମୋର ସରି ସରି ଯିବ ।।୩।।
ସବୁବେଳେ ତୁମକୁ ମୁଁ କରଇ ଗୁହାରି
ସେ ସବୁ ଶୁଣିବାକୁ ବେଳ ନାହିଁ ତୁମରି ।।୪।।
ହେ ବିଶ୍ୱ ବୁଝା କି ମୋର ପ୍ରାଣର ଠାକୁର
ମୁକ୍ତି ଦିଅ ଏଘଟରୁ ଆତ୍ମାକୁ ମୋହର ।।୫।।
ଚାଲିଗଲେ ଏପୁରରେ କରିବିନି ଅଳି
ତୁମେ ବସିଥିବ ପ୍ରଭୁ ହୋଇ ନିଜଞ୍ଜାଳି ।।୬।।
ଆଉ କରିବିନି ପ୍ରଭୁ ତୁମକୁ ବିରକ୍ତି
ଦିଅ ଦିଅ ପ୍ରଭୁ ମୋତେ ଚିରଦିନ ମୁକ୍ତି ।।୭।।

(୩୧)

## ଚିନ୍ତାମଣି

ଚିତ୍ତେ ଚିନ୍ତିଛି ଚନ୍ଦ୍ର ଉଦିଆ ଚିନ୍ତାମଣିକି
ଚିରାକନା ପରି ଦେଉ ସେ ପଛକେ ଚିରିକି ।।୧।।
ଚାହିଁଚାହିଁ ବିତିଗଲା ମୋ ଧନର ସରଣୀ
ଚଳିଲା ବୟସ ବାର୍ଦ୍ଧକ୍ୟ ଉଠେ ଉଜାଣି ।।୨।।
ଚାନ୍ଦେ ଚାହିଁ ମୁଦ୍ରିତ ହେଲା ପରି କମଳ
ଚର୍ମ ସବୁ ଲୋଚା ହୋଇ ହୋଇଲା ଶିଥିଳ ।।୩।।
ଚମକି ଦେଖେ ଚର୍ମଘେରା ଅସ୍ଥିମଜ୍ଜା ଘରରେ
ଚିର ପରିଚିତ ଲୋକକୁ ଭୁଲୁ କିମ୍ପାରେ ।।୪।।
ଚକା ଚକା ଆଖି କଥା ତୋହର ମୁହିଁ ଶୁଣି
ଚାତକ ପ୍ରାୟେ ଭାବୁନ୍ତି ଦିବସ ରଜନୀ ।।୫।।
ଚାହିଁବକି ଚକା ଆଖିଆ ମୋ ଆଡକୁ ଥରେ
ଚଞ୍ଚଳେ ଧାଇଁବି ତାକୁ ଧରିବା ଆଶାରେ ।।୬।।
ଚାନ୍ଦିନୀ ରାତିରେ ବସି ତା ପାଇଁ ଗୁନ୍ଥିବି ମାଳ
ଚକିତେ ସୁମଧୁରେ ଧରିବି ଭକତିର ସୁର ।।୭।।
ଚିରଦିନ ଜଗନ୍ନାଥ ବସିଅଛି ଏକାକି
ଚାଣ୍ଡେ ତୋତେ ଡାକେ ଗୁହାରି ଶୁଭୁ ନାହିଁକି ।।୮।।

(୩୨)

## ରାଧାରାଣୀ

ରତି ଅଭିଳାସୀ ସୁଶ୍ରୀ ପିକଭାଷି
ରସେ ସଖୀଗଣେ କହିଲା,
ରହ ରହ ସଖୀ ହେଲି ବଡ ଦୁଃଖି
ରଙ୍ଗେ ମନ ମୋ ଦହିଲା ।୧।

ରଖିଲି (ଯାରେ) ହୃଦୟ ହେଲା ନିରିଦୟ
ରମଣ ଖେଳ ତ ନୋହିଲା,
ରଙ୍ଗିଆ ନାଗର, ହୋଇଲା ନିଷ୍ଠୁର
ରଙ୍କ ରତନ ନ ଅଇଲା ।୨।
ରଖିବି ଜୀବନ, ଦେଖିକା ବଦନ
ରାଜ ନନ୍ଦନ ତ ଛାଡିଲା,
ରହିଣ କୁଂଜରେ, ନିପଟ ସଂଜରେ
ରସେ ସେ ରମଣୀ ମୋହିଲା ।୩।
ରସିକ ନାଗର ଜାଣଇଁ ହୃନ୍ଦର
ରସବତୀ ଚନ୍ଦ୍ର ଧଇଲା,
ରଖିଲାନି ମନ ରାଧାରାଣୀ ନାମ
ରାମପରି ହୃଦୁ ପୋଛିଲା ।୪।
ରହିବ ସେକେତେ ବୋଲେ ସଖି ଯୁଥେ
ରଜନୀ (ମଙ୍ଗଳ) ପବନ ବୋହିଲା,
କହେ ଶୈଳମଣି ଆଗୋ ରାଧାରାଣୀ
କେଶବ ଆସିବ ବାସିଲା ।୫।

(୩୩)

## ନିଳାଦ୍ରୀ ବିହାରୀ

ଭଜରେ ମନ, ନୀଳାଦ୍ରୀ ବିହାରୀଙ୍କି
ଭଜ ଶୀରିପତି ଜଗନ୍ନାଥଜୀ ଙ୍କି ।।୧।।
ତା ପଦ କଞ୍ଜ ମଧୁଲଗା ଆଖିକି
ଗରୁଡ ପଛରେ ଦେଖ ତ୍ରୀମୂର୍ତ୍ତିଙ୍କି ।।୨।।
ବଡଦାଣ୍ଡେ ପଶି ଚାଣ୍ଡେ ତୁ ଖୋଜୁକି
ଚତୁର୍ଦ୍ଦିଗ ଖୋଜ ସେ ଚକା ଆଖିକି ।।୩।।
ବଡଦାଣ୍ଡ ସାରା ତା ପାଦ ଧୂଳି କି
ବୋଳିହେଲେ ଲାଗିବ ତୋତେ ଭେଳିକି ।।୪।।

ଭେଳିକି ଲାଗିଲେ (ଯିବୁ) ଦରଶନ କରିକି
ଦର୍ଶନରେ ପାଇବୁ କୋଟୀ ନିଧିକି ।।୫।।
ତୋତେ ଦେଖି ଶମନ ଯିବ ତରକି
ରଖିବ ନେଇ ତାର ମଥା ପରେ କି ।।୬।।
ଗାଢେ ଭଜ ଭାଇ ଭଉଣୀ ତିନିଙ୍କି
ଫିଟାଇ ଦେଇ ପ୍ରେମ ପସରା ଟିକି ।।୭।।

(୩୪)

## କାଳିଆ ସୁନା

କଳା କିଟିକିଟି ତାର ମୁହଁଟା
ଶଗଡ ଚକପରି ଆଖି ଦୁଇଟା,
ମୁଣ୍ଡରେ ବାନ୍ଧିଛି ରେଶମୀ ଠେକା
ନାକରେ ନାଇ ନୁକ୍ତା ବସଣୀଟା,
ଚାଖଣ୍ଡେ ଓସାର ତାର ପାଟିଟା
ସଖି କହିଲୁ ଦେଖି ସେ କିଏ ?
ଟେକି ଦେଇଛି ସେ ହାତ ଦୁଇଟା
ଅଣ୍ଟାରେ ପିନ୍ଧିଛି ସେ ରେଶମୀ ମଠା,
ବାନ୍ଧିଛି ପରେ ଘୁଂଘୁର ମାଳଟା
ବସିପଡିଅଛି ଲୋ ଚକା ବଇଠା,
ପାଖେଛନ୍ତି ଭଗ୍ନି ଭାଇ ବଳିଆ
ସଖି କହିଲୁ ଦେଖି ସେ କିଏ ?
ଯେ ମନ ଭୁଲାଇ ଶ୍ରୀକ୍ଷେତ୍ର ନିଏ
ଭକତର ମନ ପରାଣ ମୋହେ
ଯାହା ମାଗିଲେ ଯେ ସବୁ ସେ ଦିଏ
ଜଗତ କର୍ତ୍ତା ଜଗନ୍ନାଥ ସିଏ ।।

(୩୫)

# ଶ୍ରୀନିବାସ

ବାସଙ୍ଗ ଫୁଲର ବାସ, ପୁରେ ଆସମୋର ଶ୍ରୀନିବାସ
ଦୁଃଖିନୀ ହେଉ ଗୋ ତୋଷ ।। ଜଗନ୍ନାଥ ହେ--
ଫୁଟିଲା କୁରେହିଁ ଫୁଲ, ଡାକି ଡାକି ତୁମକୁ ନଆସିଲ
କଲ ମୋତେ କଲବଲ ।। ଜଗନ୍ନାଥ ହେ--
ଆମ୍ବ ବଉଳର କଷି ଝୁରୁଅଛି ମୁହିଁତ ଦିବାନିଶି
ପଦେ ହୋଇ ଅଭିଳାଷି ।। ଜଗନ୍ନାଥ ହେ--
ସଫେଦ ଫୁଲ କଞ୍ଚନ, ରହିଲ ତୁମେତ ଶ୍ରୀକ୍ଷେତ୍ର ଧାମ
କରି ମୋଦେ ହିନିମାନ ।। ଜଗନ୍ନାଥ ହେ--
ତୁଳସୀ ଜଟାର ଗନ୍ଧ, ସତେ ଆସିବ କି ପରମାନନ୍ଦ
ବିଷାଦ ହୋଇବ ବନ୍ଦ ।।ଜଗନ୍ନାଥ ହେ--
ବନରେ ବନ ପଳାଶ, ରୋଷନ ବହିତା ଏଠାକୁ ଆସ
କ୍ଷମାକରି ମୋର ଦୋଷ ।। ଜଗନ୍ନାଥ ହେ--
ହଳଦିଆ କନିଅର, ମାଧବତ ମୋର ପ୍ରାଣ ପିଣ୍ଡର
ଅପ୍ରାଧ୍ୟ କରିବେ ଦୂର ।।ଜଗନ୍ନାଥ ହେ--
ଟିକି ଘାସର କୁସୁମ, ଜଣାଇଁ ଶ୍ରୀଗୁରୁ ପଦେ ପ୍ରଣାମ
ଯୋଡିଲା ଶଇଳ ମନ ।। ଜଗନ୍ନାଥ ହେ--



(୩୬)

## ପତିତ ପାବନ

ଡାକି ଡାକି ଯେବେ ଆସିଲ ପ୍ରଭୁ
ତେବେ କିମ୍ପା ମଉନ
ହୃଦୟ ଦୁଆରେ କରିବନି କି
ଅରୁଣ ସ୍ତମ୍ଭ ସ୍ଥାପନ ।୧।
ଆବର୍ଜନା ସବୁ ଧୋଇ ବସିବ କି
ଆହେ ପତିତ ପାବନ
କରୁଣାରେ ତୁମ୍ଭ ବାଇଶି ପାବଛ
କରିବନି କି ନିର୍ମାଣ ।୨।
ଆଦେଶେ ତୁମ୍ଭର କାଶି ବିଶ୍ୱନାଥ
ଦେବେନି କି ଦରଶନ
ପ୍ରପଞ୍ଚ ପ୍ରକୃତି ଠେଲି ଦେଇ ଦୂରେ
ଚାହିଁବି କି ନାରାୟଣ ।୩।
ମନ କଳପନା ଧୋଇ କଳ୍ପବଟ
ହେବନି କି ଉତ୍ଥାପନ
ଶ୍ରୀ ଗଣପତି ନାଥ ଜମାଇଁବେ
ନାହିଁକି ତାଙ୍କ ଆସ୍ଥାନ ।୪।
ଭୁଷଣ୍ଡ କାକ ସାଥେ ଚକ୍ର ତୀର୍ଥ
ଫେରିବନି କି ନୟନ
ମା ବିମଳା ସତୀ ମାହେଶ୍ୱରୀଙ୍କୁ
କହିବନିକି ବଚନ ।୫।
ସାକ୍ଷୀ ଗୋପୀନାଥ ଆନାଥନାଥ
ପଦେ ଡାଳିବିନି ପ୍ରାଣ
କମଳା ସାବିତ୍ରୀ ଷଠୀ ଦେଈଙ୍କୁ
ଜୁହାରିବିନିକି ପ୍ରଣାମ ।୬।

ଜଗଜ୍ଜନନୀ କମଳିନୀଠାରେ
ବ୍ୟକ୍ତ କରିବିନି କି ମନ
(ଶେଷେ) ଭବୂହାଟ ସାରି ସେ ଲକ୍ଷ୍ମୀ ହାଟେ ।।୭।।
କୈବଲ୍ୟ ହେବ କି ସେବନ
ହେ ଆର୍ତ୍ତତ୍ରାଣ ବୁଝମୋର ମନ
ଶଇଳ କରେ ଜଣାଣ ।୮।

(୩୭)

## ଦୁଃଖ ନାଶନ

ଦୁଃଖନାଶନ ହେ ଆଉ ବଳ ମୋର ନାହିଁ
ଖଳ ପ୍ରକୃତିର ପ୍ରଭାବ ନାଶନ ପାଇଁ,
ଜୀବନ ଯାକତ କଟିଯିବ ହାହୁତାସେ
ନିଷ୍ଠୁର ହେଲେ ତୁମେ ରଖିବ ଆଉ କିଏ ସେ, ।୧।

ଜାଣନାକି ଗୁରୁ ମନ ଗହନର କଥା
କି ଦୁଃଖ ଦେଉଛି ଆଜି ଦାରୁଣ ଆଶାଟା,
ଆଶା ମରୀଚିକା ପଛରେ ମୁଁ ଅଛି ଧାଇଁ
ଆଶାର ଧନଟି ନପାରେ ଥରେ ଗୋ ଛୁଇଁ ।୨।

ନିଃସ୍ୱ ପାଛ ମୁହିଁ ଚଉଦିଗ ଖୋଜିବୁଲେ
ଶାନ୍ତି କାହିଁ ଶାନ୍ତି ନିଭୃତ ଅନ୍ତରରେ,
କିଏ ଦେବ ଶାନ୍ତି, ତୁମେ ନିପଟ ନିଷ୍ଠୁର
ଦୁଃଖି କନ୍ୟା ପାଇଁ ଖୋଲନାହିଁ ଅନ୍ତର, ।୩।

କେତେଦିନ ଏହିପରି କରବି ରୋଦନ
ଝରିବନି ଦୀନା ପାଇଁ ତୁମରି ସେନେହ,
ବାରେ ମାତ୍ର ଗୁରୁହେ ଦେବନି କି ଚାହିଁ
ଭବ ପାରାବାରୁ କରିବନିକି ହେ ତ୍ରାହି ।୪।

ଦୁଃଖ ନାଶନ ହେ ଆଉ ବଳ ମୋର ନାହିଁ
ଖଳ ପ୍ରକୃତିର ପ୍ରଭାବ ନାଶନ ପାଇଁ ।୫।

(୩୮)

## ପରମେଶ୍ୱର

ପ୍ରଭୁ ତୁମେ ମୋର ସାହା ଭରସା
ତୁମ୍ଭ ପରି ଆଉ ନାହାନ୍ତି କେହି,
ତୁମ୍ଭ ପାଦ ତଳେ ସମର୍ପି ଦେଇଛି
ମୋ ମନ ବୃନ୍ଦା ବନକୁ ତହିଁ ।୧।
କରୁଣ ରାଗିଣୀ ତୋଳି ମୁଁ ସହସା
ରଜନୀରେ ଯେବେ ପଡେଗୋ ଶୋଇ,
ଚଉପାଶେ ଆସି ବିଷାଦର ସ୍ୱପ୍ନ
ମଛନ୍ତି ହୃଦୟ ମୋର ହଲାଇ ।୨।
ମ୍ରିୟମାଣ ହୋଇ ଭାଷା ନ ସ୍ଫୁରଇ
ବ୍ୟଥିତ ପାରାଣେ ଅସ୍ଥିର ହୋଇ ,
ଶକ୍ତି ଦିଅ ପ୍ରଭୁ ଦିଅ ଶକ୍ତି ମୋତେ
ଶୁପ୍ତ ଚେତନା ମୋ ଉଠୁଗୋ ଚେଇଁ ।୩।
ଦୂରେଇ ଯାଉ ମୋ ସମସ୍ତ କାଳିମା
ଅଭୟ ପଙ୍କଜ ଚରଣ ଧ୍ୟାଇ,
ସେ ଚରଣେ ଡାଳି ମୋ ଆଶା କୋଥଳି
ବାହିବି ନଉକା ସଂସାର ନଈ ।୪।

(୩୯)

## ପରମବ୍ରହ୍ମ

ଆହେ ବଳିଆର ଭୂଜ,
ମୋ କଥାକୁ ପ୍ରଭୁ ଟିକେ ହେଜ
ନିଜ ଲୋକ ବୋଲି ଜଗୁ
ସଭିଙ୍କ ସାଥିଲେ ମୋତେ ଖୋଜ
ଆହେ ବଳିଆର ଭୂଜ ।୧।

ଥରେ ଡାକି ଦେଲେ ନେତ୍ର
ମଉଳି ଯିବ ଦୁଃଖର ତେଜ
ଆରତେ ଡାକିଲା ଏଣୀ
ରଖିଲ ତାହାକୁ ଦେବରାଜ
ଆହେ ବଳିଆର ଭୂଜ ।୨।
ଡାକିଲା ପାଣ୍ଡବ ନାରୀ
ବସ୍ତ୍ର ଦେଇ ରଖିଲ ତା ଲାଜ
ଜୀବନ ମରଣ ମୋର
ସମାନ ହେଲାଣି ଚତୁର୍ଭୂଜ
ଆହେ ବଳିଆର ଭୂଜ ।୩।
ସବୁ କଥା ଯଦି ଗଲା
ଭାସି ଆହେ ବ୍ରଜ ଯୁବରାଜ
ପୂରାଣ ଶାସ୍ତ୍ର କି ମିଛ
ଭଣ୍ଡାମିଟା ତୁମର କି ନିଜ
ଆହେ ବଳିଆର ଭୂଜ ।୪।

(୪୦)

## କଳା ଭଅଁର

ଗୋଧୂଳିର ରେଣୁ ଲାଗିଲା, ଲାଗିଲା,
କେଳି ସଦନେ ବୃନ୍ଦାବନେ,
ଶୁକ ହେଲା ମୂକ, ମୂକ ହେଲା ପିକ
କାହ୍ନୁର ବଇଁଶି ବାଦନେ ।୧।

ଧାଇଁ ଆସେ ଅଳି, ହସିଦିଏ କଳି,
ବଧୂଲୀ ବିଧୁ ବଦନେ,
ସେ କଳା ଭଅଁର ହୁଅଇ ପାଗଳ
ପୁଷ୍ପିତା ପୁଷ୍ପ ଚୁମ୍ବନେ ।୨।

ସଞ୍ଜୁଆ ତାରାଟି ଚାହେଁ ମିଟିମିଟି
କାଳିଆ ଶ୍ରୀ ରଙ୍ଗ ଚରଣେ,
ଆସିବ ସେ ରାଇ ସୁଲାବଣ୍ୟମୟୀ
ଲଳିତା ସଖୀର ଗହଣେ ।୩।
ରଚିବେ ଗୋ ରାସ ପ୍ରଭୁ ପୀତବାସ
ଯମୁନା କୂଳେ ଉଲ୍ଲସେ ମନେ,
ପୀତବାସ ରାସ ଦେଖି ହେବ ତୋଷ
ଶୈଳ ବୋଲି ଦୀନା ଜଣେ । ୪।

(୪୧)

## ବାଙ୍କ ଚୁଳିଆ

ମୋ ମନ କଦମ୍ବ ମୂଳେ, ନାଚଇ ତଳେ ତଳେ
ନବ ନିରଦ ମୂରତୀ,
ଚିହ୍ନିବି ବୋଲି ମୁହିଁ ସରାଗେ ଗଲି ଧାଇଁ
ଦେଖି ଅପରୂପ ଜ୍ୟୋତି ।୧।
ନଦେଲା ସେହି ଚିହ୍ନା ହେଲି ମୁଁ ପଥବଣା
ଛାତି ହୋଇଲା କରତି,
ଅଟେ ବଡ ହୁନ୍ଦରା ଘୁରୁଛି ଦୁନିଆସାରା
ସେହି ତ ଜଗତ ପତି ।୨।
ଘେରାଇ ମାୟାଜାଲ କରେ ପ୍ରାଣ କଲବଲ
ଠକୁଆ ସେହି ଶ୍ରୀପତି,
ଘର ଭିତରେ ଥାଏ ଜମା ଦେଖାନଦିଏ
ସରିଯିବ(ବୋଲି) ତା ସମ୍ପତି ।୩।
ସାଧୁଜନେ କହଭଲା କିମ୍ପାଇ ଏପରି ହେଲା
କରି ମାଟି ଘରେ ଭରତି,
ସେ ଯେବେ ନାଚୁଛି ଦମ୍ଭେ ନରଖେ କିମ୍ପାଦମ୍ଭେ
ଭଜିବାକୁ ତା କୀରତି ।୪।

ଚିହ୍ନନ୍ତି ବୋଲେ ତାହାକୁ ଆଣ୍ଟେ ଭିଡନ୍ତି କୋଳକୁ
ନଛାଡନ୍ତି ଦିବାରାତି
କହେ ଶଇଳ ପାପି ମନରେ ହୋଇଣ କୋପି
ଗାଳି ଦେବିରେ କଳାହାତୀ ।୫।

(୪୨)

## ନୀଳମାଧବ

ନୀଳ ଜମୁନା ଜଳେ ପ୍ରେମ ଭଉଁରୀ ଖେଳେ
(ମାଦକେ) ମାଦକ ଭରା ମନ ଚଞ୍ଚଳ,
ପ୍ରେମ ମୂରତୀ ରାଇ ପ୍ରେମେ ମୋହିତ ହୋଇ
(ଆସେ) ସଘନେ ଉଡାଇ ନୀଳ ଅଞ୍ଚଳ ।୧।
ପ୍ରେମ ପସରା ହରି କରେ ମୁରଲୀ ଧରି
(ଡାକେ) ପ୍ରେମିକା ନାମ ଗାଇ ଚଞ୍ଚଳ,
ବୃକ୍ଷୁ କୁସୁମ ଝଡେ କଦମ୍ବ ମୂଳ ଥରେ
(ବହେ) ପ୍ରେମରେ ପଲଗୁ ସ୍ୱଚ୍ଛ ସଲିଳ ।୨।
ପ୍ରେମ ଅଳକା ନନ୍ଦା ପ୍ରେମରେ ଜଗତ ବନ୍ଧା
(ପ୍ରେମ) ପାଗଳ ସଚ୍ଚିଦାନନ୍ଦ ଗୋପାଳ,
ଭକତ ପ୍ରେମେଧରା ଦିଏ ମୁରଲୀ ଧରା
(ଭକ୍ତ) ଲାଗି ତା ପଞ୍ଚ ପ୍ରାଣ ବିକଳ ।୩।
ପ୍ରେମ ବାଳ ଗୋପାଳ ପ୍ରେମର ନନ୍ଦ ଦୁଲାଳ
(ମୋହୃଦ) ପ୍ରେମେ ତା ପ୍ରେମ ହେଉ ଯୁଗଳ ।୪।



(୪୩)

# ଶରୀର ତତ୍ତ୍ୱ

ଘର ଭିତରକୁ ବୋହୁଟିଏ କଲି
ବୋହୁମୋର ବାରୁଆଳି,
କାମଧନ୍ଦା ସବୁ ପକାଇ ଦେଇ ସେ
ଚାଲୁଥାଏ ଥିରିଥିରି । ।୧।
ରାମଧାନ ତକ ସାଇତି ନରଖେ
ହୋଇଗଲା ସବୁ ଚୋରି,
ସୀତା ପୁରି ଶାଡୀ ଟେକି ନଧରେ ଗୋ
ଫାଳ ଫାଳ ଗଲା ଚିରି ।୨।
କୃଷ୍ଣନାମ ଅନ୍ନ ନରାନ୍ଧେ କଦନେ
ନଲଗାଏ ସେହୁ ଚୁଲି,
ରାଧାବାସ କୂପୁ ନକାଢେ ପାଣିସେ
ଶୋଷରେ ମଲି ମୁଁ ଝୁରି ।୩।
ଏଢେ ଦୁରୂଦଣ୍ଡି କହିଲେ ରାଗିବ
କରୁଛି ମୋ ସାଥେ କଳି,
ତା କଳିକୁ ଶୁଣି ଭଗାରୀ ଶଇନ
ଆସନ୍ତି ସଘନେ ଚଳି ।୪।
ତାଙ୍କ ସାଥେ ବୋହୁ ହସି ମିଶି ଯାଏ
ଆଦର ସୋହାଗେ ଡଳି,
ଚେତା ଯେଉଁ ଦିନ ପଶିବ ବୋହୁର
ଘର ହୋଇଥିବ ଖାଲି ।୫।
ଘଡ ଘଡ ହୋଇ ମୁଖଶାଳା ପଟେ
ଛଉ କରିବ ସେ ଡରି
କିଛି ନ ନେଇଣ ଚାଲିଯିବ ସେତ
କଳଙ୍କ ପସରା ଧରି ।୬।
ବୋହୁଲୋ କହୁଛି ତୋତେ ମୁଁ ବୁଝାଇ
ବୁଝି ବାନ୍ଧ ତୋ ପୁଟୁଳି
ବିଷ୍ଣୁନାମ ଧନ ଯତନେ ରଖିଲେ
ହେବ(ତୋ)ପଥକୁ ସଂଖାଳି ।୭।

(୪୪)

## ଶ୍ରୀରାମ

କୋଦଣ୍ଡ କାଣ୍ଡ ଧାରୀ ରାମ ମୁରାରୀ
ଆଜାନୁ ଲମ୍ବିତ ଭୂଜାବଳି
ହୃଦରେ ଶୋହେ ସ୍ୱଚ୍ଛ ଉପବୀତ
କଣ୍ଠରେ କଉସ୍ତୁଭଗାଳି ।୧।
କର୍ଣ୍ଣରେ ମରକତ ବେନି କୁଣ୍ଡଳ
ଶିରେ ମୁକୁଟ ଝଲମଲ
ସୁଉଚ୍ଚ ନାସିକା ତୀକ୍ଷ୍ଣ ସୂକ୍ଷ୍ମ ଧାର
ନୟନ ନିନ୍ଦେତ ଭ୍ରମର ।୨।
ବାହୁରେ ବାହୁଟି କରରେ କଙ୍କଣ
କଟୀରେ ସୁଝିନ ବସନ
ଚରଣେ ଝମକେ ଘୁଙ୍ଘୁର ମାଳି
ମୋ ମନ ସେଠି ହେଉ ମଗନ ।୩।
କୋଦଣ୍ଡ କାଣ୍ଡଧାରୀ ରାମ ମୁରାରୀ
ଆଜାନୁ ଲମ୍ବିତ ଭୂଜାବଳି । ।୪।

(୪୫)

## ରଘୁ ରାମ

ମନ ତୁ ରାମ ଭଜନ କର , କୃଷ୍ଣ ଭଜନ କର
ନାମ ପ୍ରେମନୀରେ ଅବଗାହନରେ
ନାମାମୃତ ପାନ କର
ରାମ ଭଜନ କର, ତୁ କୃଷ୍ଣ ଭଜନ କର ।୧।
ନାମ ଗାଇ ଗାଇ ସୁଖେ ଯିବୁ ତୁହି
ଭବ ସିନ୍ଧୁ ହେବୁ ପାର ।। ରାମ ଭଜନକର ।୨।
ରାମ ନାମ କହି ସିନ୍ଧୁ ଗଲା ଡେଇଁ
ସେହି ଅଂଜନା କୁମର ।। ରାମ ଭଜନକର ।୩।

ଲଙ୍କା ବିଭିଷଣ ଧରି ରାମ ନାମ
ହୋଇଗଲାତ ଅମର ।। ରାମ ଭଜନ କର ।୪।
ଗଳାର ରତନ କୌଶଲ୍ୟା ନନ୍ଦନ
କର ତୁ ଗଳାର ହାର ।। ରାମ ଭଜନକର ।୫।
ଭକତର ସଖା ଭକ୍ତେ ଦିଏ ଦେଖା
ଭକତ ଜୀବନ ତାର,
ମନ, ରାମ ଭଜନ କର ।୬।

(୪୬)

## କାଳୀଦଳା

ସୁନା ମୁହଁ ପନ୍ଦାକୁ, ମୁଁ ବେଗୁନିଆଁ ତାଟି
ପ୍ରଭୁ, ମୁଁ ବେଗୁନିଆଁ ତାଟି
ଜଗି ଜଗି ମାଟି ପରେ ଯିବି ମୁହିଁଲୋଟି,
ଲୋଟି ଯାଇଭିଜା ନୟନେ ଚାହିଁ ଥିବିଟି
ଦେଖିବାକୁ ସେହି ନୀଳଘନ ଶ୍ରୀମୂର୍ତ୍ତୀ
ମାୟ୍ଯ ଉଇ ଖାଇଯିବେ ସାରା ଦେହଟି,
ଖଣ୍ଡି ଖଣ୍ଡି ଭାଙ୍ଗି ଯିବ ବେଗୁନିଆଁ ତାଟି
ତଥାପି ଛାଡିବି ନାହିଁ କୃଷ୍ଣ ନାମଟି ।।
କୃଷ୍ଣ ମୋ ସୁନା ମୁହଁ ଫନ୍ଦା(ମୁଁ)ଜଗି ଥିବିଟି
ପାଇ ଶ୍ରୀଗୁରୁ କରୁଣା କଣା ରତନ ଗୋଟି
ଉଢେ ରଡି ଛାଡୁଥିବି ଓଁ ଶ୍ରୀଗୁରୁ ଶ୍ରୀପତି
କଣ୍ଠମୋର ଯିରେ ଯେବେ ଖୁଖିଯିବଟି
ଗୁରୁପଦ ମକରନ୍ଦ ଆଣ୍ଟେ ଦେବି ଚାଟି ।।
ତ୍ରିଦଶ ଜଗତ ପୁଣି ଚାହିଁବେ ତରାଟି
କୃଷ୍ଣ ମୋ ହୃଦ ଆକାଶର କାବ୍ୟ ତାରାଟି
ଗୁରୁପଦଧ୍ୟାୟୀ ତା ପଦେ ଲୀନ ହେବିଟି
ଭାଷେ ମୁହିଁ ଗନ୍ଧ ହୀନା ବେଗୁନିଆ ତାଟି ।।

(୪୭)

**ବଳିଆର ଭୂଜ**

ବଡ ଦେଉଳର ଗମ୍ଭିରୀ ଭିତରେ, ବାଜିଲା ପ୍ରଭାତି ବାଜା
ଭାଇ ବଳରାମ ଭଗିନୀର ସହ, ଉଠିବ କାଳିଆ ରଜା ।
ସାରି ଦାନ୍ତୁଆଣି ଖାଇବେ ସେ ବସେ ପୁଣି, ବାଳଭୋଗ ଖିରୀଖଜା
ପଣ୍ଡା ପଡିଆରୀ ପକାଅନ୍ତି ହୁରି, ଥରାଇ ନିଜର ମଙ୍କା ।
ଫିଟା ଚକାଆଖି ଦିଅଥରେ ଦେଖି, ଭକତଙ୍କ ଏହି ମଜା
ଲହର ପହର ହୁଅନ୍ତି ସକଳ, ଚେକିବାକୁ ନାମଧ୍ୱଜା ।
ଦେଖିଣ ମୁଖକୁ ଭୁଲିବେ ଦୁଃଖକୁ, ସେଇତ ତାଙ୍କର ପୂଜା
ପୂଜା ଅରଚନା କିଛିନାହିଁ ଜଣା, ଜାଣୁତୁମେ ଆମରାଜା ।
ହେ ବିଶ୍ୱ ସମ୍ରାଟ ଘେନି ପ୍ରଣିପାତ, ନକର ଆମକୁ ତେଜ୍ୟା
ଏ ଉତ୍କଳବାସୀ ହୋଇ ଅଭିଳାଷି, ରଙ୍ଗା ଚରଣେ ମିଶିଯା,
ମିଶିଯା, ମିଶିଯା ।
ବଡଦେଉଳର ଗମ୍ଭିରୀ ଭିତରେ,
ବାଜିଲା ପ୍ରଭାତି ବାଜା ।

(୪୮)

**ଦୀନବାନ୍ଧବ**

ଦୁଃଖ ଯେବେ ମୋଜୀବନେ ହୋଇଥିଲା ଲେଖା
ପାହାନ୍ତି ପ୍ରହରେ, ସ୍ୱଇଛାରେ କିମ୍ବା ଦେଲ ଦେଖା ।
ଧରାରେ ତୁମେ ଦୟାକୁ ଠାକୁର ମୂର୍ତ୍ତ ଆଶ୍ରିତା,
ଆସିତାକୁ ଆଶ୍ରାଦେଇ କାହିଁକି ଏ ନିରବତା ।
ବୁଝି କି ପାରନା ପ୍ରଭୁ କ୍ଷତ ଆଜି କେଉଁ ଜାଗାଟା
ହୁହୁ ହୋଇ ପୋଡିଉଠେ ଏହି ବିଷାକ୍ତ ଘାଆଟା ।
ପ୍ରକୃତିର ତାଣ୍ଡବ ଲୀଳାରେ ଘୁରିଯାଏ ମଥା

ତୁମ ଶରଣା ଗତ ପୁଣି ହୁଏ କି, ହଟହଟା ।
ତୁମ୍ଭକୁ ବୁଝିବାକୁ ନାହିଁ କେହି ଜଣେ ସକତା
ଆପଣ ବିଶ୍ୱଗୁରୁ ପ୍ରାଣର ଭାଗ୍ୟ ବିଧାତା ।
ମୋ ଜୀବନ ଅନ୍ଧକାରେ ତୁମେ ମୋ ଜ୍ଞାନ ସବିତା
କରିନି ହିନିମାନ ତୁମ୍ଭର ମୁଁ ଛୋଟ ଝିଅଟା ।।

ବିକଳେ ଜଣାଏ ଦୁଃଖୀନି ଭୁଲି ନଯାଅ ସଖା
ତୁମ କରୁଣା ଛାଉଣୀରେ ମୋ ନାମ ଥାଉ ଲେଖା ।
ଜୟ ଗୁରୁ ଜୟ ଗୁରୁ ମନ୍ତ୍ରେ ଥରୁ ହୃଦୟଟା
ଏତିକି କରୁଣା କରହେ ମୋର ପରାଣ ଦେବତା ।।

(୪୮)

## ଦୟାମୟ

ଆହେ ଦୟା ମୟ ହରି ବିଶ୍ୱ ବିହାରୀ
ଲାଗିଯିବି ପଦେ ତୁମ ଶିରିଷ ଅଠା ଭଳି ।
ଜଡିଯିବି ପରାଣେ ଗୋ ପୁଲକ ଭରି
ଗାଉଥିବି ଗୀତ ମନ ବୀଣାରେ ଥିରିଥିରି ।
ଗୀତର ସାରାଂଶ ହେବ, ରାମହରି, ରାମହରି
ଘୋସି ଘୋସି ହେବି ମୁଁ ସରଗର ପରୀ ।
ଜୟଗୁରୁ ଡେଣା ପାଇ ଉଡିଯିବି ଫୁରକରି
ସଂସାର ବନ୍ଧନ ମୋହ ପାରିବନିତ ଧରି ।
ମାୟାଜାଲ ଛିଣ୍ଡାଇ ଗଡିବି ନୂଆ କରି
ପ୍ରେମଜାଲ ପ୍ରେମ ମନ୍ତ୍ର ପ୍ରେମେ ଜଗତ ହରି ।
ପୂଜା ଅରଚନା ନାହିଁ ମୁଁତ ପ୍ରେମର ଭିକାରୀ
ଭିକାରୁଣୀ ମୁଁ ମାଗିବି ଭିକ୍ଷା ତୁମନାମ ଧରି ।
ଭକତି ଅଠାକୁ ଛଡାଇ ପାରିବ କି ହରି
କୁହ ପ୍ରଭୁ ତୁମ ମନକଥା ରୋଷ ନକରି ।
ବାର ବାର ତୁମ ପଦେ କୁରଛି ଅଳି
ତୁମ୍ଭେ ମୋର ଆସୁଥାଉ ଗୁରୁ ଗୋବିନ୍ଦ ଶ୍ରୀ ହରି
ଗୁରୁ ଗୋବିନ୍ଦ ଶ୍ରୀହରି ।।

(୫୦)

# କାଳିଆ ରାଜା

ତୁଇ ଆମରି ରଜାରେ ଜଗା,
ତୁଇ ଆମରି ରାଜା
ଆବାଳ ବୃଦ୍ଧ ଯୁବକ ପ୍ରୌଢ
ସଭିଏଁ ତୋର ପ୍ରଜା
ତୁଇ ଆମରି ----- ॥
ଚଉପାଶେ ତୋ ଘେରିଣ ଆମେ,
ଟେକିବୁ ନାମ ଧ୍ୱଜା
ତୁଇ ଆମରି ----- ॥
ସଜାଇ ଦେବୁ ମନ କୁସୁମେ,
ହସିବେ ସିନ୍ଧୁ ତନୁଜା
ତୁଇ ଆମରି ----- ॥
ତୁଳସୀ ମାଳି ଗଳାରେ ତୋର
(ଦେଇ)କହିବୁ ଭୁଲିତୁ ନଯା
ତୁଇ ଆମରି ----- ॥
ରାଜାର ସାଥେ ରାଣୀକୁ ଆମେ
କରିବୁ ତହିଁ ପୂଜା
ତୁଇ ଆମରି ----- ॥
ପଦୁଅଁ ଫୁଲ ରାଣୀ ପଦରେ
କରିବୁ ତହିଁ ଖଞ୍ଜା
ତୁଇ ଆମରି ----- ॥
ଓଡିଶା ଆମ ପବିତ୍ର ଧାମ,
ଜଗନ୍ନାଥ ତ ରାଜା
ତୁଇ ଆମରି ----- ॥
କରିବୁ ପୂଜା ଲକ୍ଷ୍ମୀ ମାଆଙ୍କୁ
ବଜାଇ ପ୍ରେମ ବାଜା
ତୁଇ ଆମରି ----- ॥
ତୁଇ ଆମରି ରାଜାରେ ଜଗା ------

(୫୧)

# ନଟନାଗର

ତୁମରି ପ୍ରେମର ଅଟେ ମୁଁ ଗୋ ପାଗଳି
ନାଚୁଛି ଗାଉଛି ମୁ ଧରି ନାମାବଳି
ହୋଇଲେଣି ବେହୋସ ଧିରେ ଢଳିଢଳି
ସଂସାର ଯନ୍ତ୍ରଣା ଆସଇ ଚଳି ,
ଚନ୍ଦ୍ରକୁ ରାହୁତ ଗିଳିଲା ପରି
ଗିଳଇ ମୋତେ ସେ ଦୁଷ୍ଟ ଅଇରି ।

କିପରି ତା କବଳୁ ହୋଇବି ପାରି
ବୁଝି ବିଚାର କର ଆହେ ଶ୍ରୀହରି
ମୁଁତ ବରହିଣୀ ଦୀନା କଳା କୋଇଲି
ଝରୁଛି କାତରେ ଚୂତ ଡାଳେ ଡାଳେ ଓହଳି ;
ମାୟାମୋହ ଶାଖା ପରା ଦେଇଛି ମେଲି
କାମନା ଅଗ୍ନିତା ସାଥେ ଦେଉଛି ଜାଳି ।

କାମନା ବୃକ୍ଷତ ଶାଖା ଦେଇଛି ମେଲି
ତାହାରି ଶାଖାରେ ପ୍ରଭୁ ଯାଉଛି ଜଳି
ଶ୍ରୀହରି ଦିଅ ହେ ଢାଳି କରୁଣା ବାରି
ଶ୍ରୀପଦ ପଙ୍କଜେ ମନ ରହୁ ମୋହରି,
ସମସ୍ତ ବାଧା ବନ୍ଧନ ଦୂରକୁ ଠେଲି
ଉଡାରେ ସଦା ମୁଁ ବନ୍ଧୁଗୁର ଶ୍ରୀହରି ।।

(୫୨)

# ଦୟାନିଧି

ଦୟାନିଧି,
ନିଧିକି ତୁମ ଗଲା ସରି
ଡାକି ଡାକି,ଯାଏ ଫେରି ଦୀନ ଭିକାରୀ ।୧।
ରିକ୍ତ ହସ୍ତେ, ତିକ୍ତ ମନେ ଆସିଲି ଚାଲି
ଦୀନବନ୍ଧୁ, ଲକ୍ଷ୍ମୀ ସାଥେ ଦେଖନ୍ତି ବୋଲି ।୨।
ମନଖେଦ, ଗଦଗଦ ଦେଇ ଓଝାଳି
ମୁଁ ଅଝଟ, କରି ଦେଇ ଥାନ୍ତି ଗୋ ଗାଳି ।୩।
କହିଥାନ୍ତି, ଶୁଣ ରାଧାପ୍ରିୟ ଶ୍ରୀ ହରି
ହରିଦିଅ, ଦୁଃଖକୁ ହରଷେ ମୋହିରି ।୪।
କିନ୍ତୁ ହାୟ, ଦ୍ୱାର କିଳା ତୁମ୍ଭ ଗମ୍ଭରୀ
ନିରବତା, ବିରାଜିତ ବୈକୁଣ୍ଠ ପୁରୀ ।୫।
(ତେଣୁ) ଘନଘନ, ହେଘନଶ୍ୟାମ କରୁଛି ଅଳି
ଦ୍ୱାରବନ୍ଧେ, ଲେପିଦେଲି ମୋ ଦୁଃଖ କାଳି ।୬।
ଲେଖିଦେଲି, ଅବାଞ୍ଛିତ ଶଇଳ ବୋଲି
ପଢିନେବ, ଲକ୍ଷ୍ମୀ ସହ ପୁରୁ ବାହାରି ।୭।
ଦେଖିମନେ, ଦୟା ହେବନିକି ତୁମ୍ଭରି
ଆହାଲକ୍ଷ୍ମୀ, ଫେରିଲା ବ୍ୟଥିତା ଭିକାରୀ ।୮।
ଦେବଗଣେ, ପଢିଯିବ ବଡ ଚହଲି
ଦୟାନିଧି, ହୋଇଲେ ଠକ ନିଧି ଭଳି ।୯।
ତେଣୁ କରି, କୋଟି କୋଟିବାର ଜୁହାରି
କହୁଛିହେ, ବେଣୁଧର ମୁଁ ମୋ ଗୁହାରି ।୧୦।



(୫୩)

## କରୁଣାକର

ଦୁଃଖ ନଦୀରତୀରେ , ବିରହିଣୀ ଆଜି ଝୁରେ
ନୟନୁ ଲୋତକ ଢାଳେ
ଦୁଃଖରେ ଦୁଃଖମିଶି ଲିଭିଯାଏ ସ୍ୱଚ୍ଛ ଶଶି
ଉତ୍ତଙ୍ଗ ତରଙ୍ଗ ଦୋଳେ ।୧।
ନୈରାଶ୍ୟ ଆସେ ଧାଇଁ ହୃଦୟେ ବିଷାଦ ଦେଇ
ଅନ୍ଧକାର ଆସି ଘେରେ,
କୃପାକର କୃପାମୟ, ଦେଇଣ ତବ ଅଭୟ
ଦୀନାହୀନା କାରୁଣ୍ୟ କରେ ।୨।
ଦେଇ ଦବ ଦୟନାବ, ଦେଖାଅ ଆଶିଷ ଠାବ
ଡାକେ ଆଜି ପଡି ଜଂଜାଳେ ।
ଜ୍ୟୋତିର୍ମୟ ତବ ଜ୍ୟୋତି ଦିଅ ପାହୁ ଘନରାତି
ହରି ହରି ସଦା ସୁମରେ ।୩।
ଗୁରୁବ୍ରହ୍ମା ଗୁରୁ ବିଷ୍ଣୁ ଗୁରୁଦେବ ମହେଶ୍ୱର
ମହାମନ୍ତ୍ର ସଦା ଉଚ୍ଚାରେ
ମହାମନ୍ତ୍ର ପ୍ରଭାବରେ, ଦିନ କାଟେ ସଂସାରେ
(ପ୍ରଭୁ) ଏତିକି କରୁଣା ମୋରେ ।୪।

(୫୪)

## ଜୟଜଗନ୍ନାଥ

ଜୟ ଜୟ ଜଗନ୍ନାଥ ନିଳାଦ୍ରୀ ମଣ୍ଡନ
ଜୟ ଜୟ ଜଗନ୍ନାଥ ପତିତ ପାବନ ।
ଜୟ ଜୟ ଜଗନ୍ନାଥ ଆରତ ଭଞ୍ଜନ
ଦୁଃଖ ବିମୋଚନ ପ୍ରଭୁ ସଂକଟ ତାରଣ ।
ଜୟ ଜୟ ଜଗନ୍ନାଥ ବିପଦ ବାରଣ
ଜୟ ଜୟ ଜଗନ୍ନାଥ ଶରଣ ରକ୍ଷଣ ।

ଜୟ ଜୟ ଜଗନ୍ନାଥ ଭକ୍ତ ପ୍ରିୟ ଧନ
ଶ୍ରୀବତ୍ସ ବ୍ରାହ୍ମଣ ପଦ ବକ୍ଷରେ ଧାରଣ ।
ଜୟ ଜୟ ଜଗନ୍ନାଥ ଦେବକି ନନ୍ଦନ
କଂସ କେଶି ନିସୋଧନ ଯାମଳା ଭଂଜନ ।
ଜୟ ଜୟ ଜଗନ୍ନାଥ ଗୋପୀ ପ୍ରାଣଧନ
ଦ୍ୱିଜରାଜ ସୁଦାମାର ଦାରିଦ୍ର୍ୟ ଭଂଜନ ।
ଜୟ ଜୟ ଜଗନ୍ନାଥ ଲକ୍ଷ୍ମୀ ନାରାୟଣ
ଜୟ ଜୟ ଜଗନ୍ନାଥ ବ୍ରହ୍ମ ସନାତନ ।
ଜୟ ଜୟ ଜଗନ୍ନାଥ ନିରାକାର ବ୍ରହ୍ମ
ଜୟ ଜୟ ଜଗନ୍ନାଥ ଲକ୍ଷେ ଶାଳଗ୍ରାମ ।
ଜୟ ଜୟ ଜଗନ୍ନାଥ ଶ୍ରୀମଧୁସୂଦନ
ଦୁଷ୍ଟ ବିନାଶନ ପ୍ରଭୁ ଗରୁଡ଼ ଆସନ ।
ଜୟ ଜୟ ଜଗନ୍ନାଥ ସର୍ବ ଦେବ ଗଣ
ତେତିଶ କୋଟୀ ଦେବଙ୍କ ପିଣ୍ଡର କାରଣ ।
ଜୟ ଜୟ ଜଗନ୍ନାଥ ଶ୍ରୀକଳା ବଦନ
ସୁଡଳ ଚକାନୟନ ଭୁବନ ମୋହନ ।
ଜୟ ଜୟ ଜଗନ୍ନାଥ ଆୟୁଧ ଧାରଣ
ଶଙ୍ଖ ଚକ୍ର ଗଦାପଦ୍ମ ଊର୍ଦ୍ଧ୍ୱ ବାହୁ ପୁଣ ।
ଜୟ ଜୟ ଜଗନ୍ନାଥ ତୁଳସୀ ଭୂଷଣ
ରତ୍ନ ବିଖଚିତ ଦିବ୍ୟ ମୁକୁଟ ମଣ୍ଡନ ।
ଜୟ ଜୟ ଜଗନ୍ନାଥ ଶ୍ରୀ ରଙ୍ଗା ଚରଣ
ଦରଶନେ ସର୍ବପାପ ମୁକ୍ତିର ସୋପାନ ।
ଜୟ ଜୟ ଜଗନ୍ନାଥ ଅମୂଲ୍ୟ ରତନ
ତବ ଗୁଣ ବର୍ଣ୍ଣିବାକୁ ଅଟେ ମୁଁ ଅକ୍ଷମ ।
ଜୟ ଜୟ ଜଗନ୍ନାଥ ଗଲି ମୁଁ ଶରଣ
ଦୁଃଖିନୀ ଶଇଳକୁ କରିବ କ୍ଷମଣ ।

(୫୫)

## ଭାବବିନୋଦିଆ

ହୃଦର ଆନନ୍ଦ ହୃଦାନନ୍ଦ ମୁଖ୍ୟ ଯାଦବ
ପୁଣି ତୁମନାମ ଅନ୍ତର୍ଯ୍ୟାମୀ କାହ୍ନୁ କେଶବ ।
ଲୀଳାମୟ ପରମବ୍ରହ୍ମ ସନାତନ ମାଧବ
କୃପାସିନ୍ଧୁ ଦୀନବନ୍ଧୁ ହରି ରାଧା ପ୍ରାଣଧବ ।
ଦୈତ୍ୟ ଅରି ଦଇତାରୀ ଭକ୍ତ ପ୍ରିୟ ଦେବ ଦେବ
ପରମାତ୍ମା ପରାତ୍ପର ନିରାକାର ବାସୁଦେବ ।
ବିଶ୍ୱ ସୃଜନା ପ୍ରଭୁ, ସୃଷ୍ଟି କର୍ତ୍ତା ସୃଷ୍ଟି ତୋ ସର୍ବ
ଏ ସଂସାର ଯେ ମନରୁ ହୋଇଥିବ ଉଦ୍ଭବ ।
ଏତେ ଉପାଧିରେ ହୋଇ ଭୂଷିତ କିମ୍ପା ନିରବ
ମୁଁ କି ତୋ ସୃଷ୍ଟିର ନୁହଁଇ ଏକ ଦୟାର ଜୀବ ।
ମୋ ପାଇଁ କିମ୍ପା ନିଷ୍ଠୁର ହେ ମୁଖ୍ୟ ଯାଦବ
ତୁମ ଉପେକ୍ଷା ଅଙ୍ଗେ ଅଙ୍ଗେ କରି ଅନୁଭବ ।
ସେ ଲାଗି ଦୁଃଖିତା ମୁହିଁ ଶୁଣ ଆହେ ପଦ୍ମନାଭ
ହେ ଯଦୁକୂଳ ଇନ୍ଦୁ ମୋଠାରେ ଦୟାରଖିଥିବ ।
ନୋହିଲେ ନିନ୍ଦାର ବାନା ଫରଫର ଉଡିବ
ତୁମେତ ଜାଣିଛ କୃଷ୍ଣ, ଦୁଃଖକୁ ଜାଣିବ
ଭାବ ବିନୋଦିଆ ଭକ୍ତ ଭାବକୁ ବୁଝିବ ।।

(୫୬)

## ବନ୍ଦନା

ସଂଧ୍ୟା ଜାଣେନା ମୁଁ, ସକାଳ ଜାଣେନା
ବେଳ ମୁଁ ଜାଣେନା, ଅବେଳ ଜାଣେନା ।
ଉଡେ ଯେତେବେଳେ ତୁମ ନାମ ବାନା
ସେତେବେଳେ ମୁଁ କରେ ନିରାଜନା ।

ପୁଷ୍ପ ଦିଏନା କି ନୈବେଦ୍ୟ ଦିଏନା
ଗାଏ ଖାଲି ପ୍ରଭୁ ତୁମ ପ୍ରେମର ବନ୍ଦନା ।
ତୁମ ସାନ୍ନିଧ୍ୟ ଖୋଜେ ଏ ଅନ୍ତର ଆତ୍ମା
ତୁମେ କି ଠାକୁର ସେ କଥା ଜାଣନା ।
କିପରି ଘାରୁଛି ବିରହ ବେଦନା
ବିରହେ ବିରହୀ ହୁଏ ଆନମନା ।
ହୃଦୟ ଚିପୁଡା କରୁଣ ରାଗିଣୀ
ସେଇ ମୋ ଧୂପ ଦୀପ ନୈବେଦ୍ୟ ପୁଣି ।
ଆରତୀ ସେହି ମୋର ପୂଜା ଉପସନା
ବିଶ୍ୱଗୁରୁ କଳ୍ପତରୁ ଘେନ ମୋ ବନ୍ଦନା
ଲାଖିଗଲା ପଦେ ତବ ଏ ଶଇଳ ଦୀନା ।।

୫୭

## ଜଣାଣ

କରମ ମନ୍ଦ ମୋହର
କଲ ନାହିଁ ସେବା କଞ୍ଜ ପୟର ହେ, କମଳା କାନ୍ତ
କୁବୁଦ୍ଧି ହେଲା ପ୍ରବଳ ହେ , କମଳା କାନ୍ତ । (୧)
ଖଟିବାକୁ ଶ୍ରୀଚରଣେ
ଖଳ ପ୍ରକୃତି ନ ଛାଡ଼ିଲା କ୍ଷଣେ , ହେ ଖଗ ଆସନ
ଖେଦ ବଢୁଅଛି ମନେ , ହେ ଖଗ ଆସନ, ।।୨
ଗଉରବେ ଇଛାନାହିଁ,
ଗାମ୍ଭିର୍ଯ୍ୟ ମାଧୂର୍ଯ୍ୟ ପ୍ରେମକୁ ଧ୍ୟାୟୀହେ ଗୋଲକ ସାଇଁ
ଗଞ୍ଜଣା ସୁଖଲାଗଇ ହେ , ଗୋଲକ ସାଇଁ ।।୩
ଘନ ବରନ ହେ ଘନେ ,
ଘେରିଗ ଲେଣି ଷଡ଼ରିପୁଗଣେ ହେ , ଘନ କାଳିଆ
ଘାଣ୍ଟିବାକୁ ଅନୁକ୍ଷଣେ ହେ, ଘନ କାଳିଆ ।।୪

ଉପାୟ ନଦିଶେ ମୋତେ ,
ଉଦ୍ଧରିବି ଭବଜଳୁ କେମନ୍ତେହେ, ଉଦ୍ଧବସଖା
ଉଣାନକିରିବ କୃପା ମୋତେ ହେ , ଉଦ୍ଧବସଖା ।।୫
ଚଉଦିଗେ ଚାହିଁ ଚାହିଁ ,
ଚକିତେ ଡ଼ାକଇ କାତର ହୋଇହେ , ଚନ୍ଦ୍ରିକା ଚୂଳ
ଚକା ନୟନ କରିବ କ୍ରାହି , ହେ ଚନ୍ଦ୍ରିକା ଚୂଳ ।।୬
ଛାଡ଼ିଲି ସକଳ ଆଶା,
ଛନ୍ଦା ଚରଣକୁ କରି ଭରସାହେ ଛଇଳ କାହ୍ନା
ଛାଡ଼ିନ କରିବ ଲୋକହସା ହେ ଛଇଳ କାହ୍ନା ।।୭
ଜଗତ ନାଥ ବୋଲାଇ ,
ଜନଆରତକୁ ଶୁଣିବନାହିଁ ହେ , ଜଗମୋହନ
ଜନେନିନ୍ଦାନାଗରାବାଜଇ ହେ, ଜଗମୋହନ ।।୮
ଝିନ ବସନି ଆ ହରି ,
ଝାଡ଼ବିନୋଦିଆ ଶୁଣ ଗୁହାରି ହେ, ଝସ କେତନ
ଝୁରିମରୁଛି ନାମ ସୁମରି ହେ , ଝସକେତନ ।।୯
ନକରିବ ମୋତେ ହେଳା ,
ନକର ଯନ୍ତ୍ରଣା ବଳି ପଡ଼ିଲାହେ , ନନ୍ଦନନ୍ଦନ
ନଚାହିଁଲେ ବୁଡ଼ିଯିବ ଭେଳାହେ, ନନ୍ଦନନ୍ଦନ ।।୧୦
ଟାଣପଣ ରଖ ମୋର ,
ଟେକି ଚାହଁ ଥରେ କୃପା ନେତ୍ରରହେ , ରାଧାମୋହନ
ଟାହି ଟାପରା ଆଉ ନକରହେ , ରାଧା ମୋହନ ।।୧୧
ଠିକେ ଶୁଣ ଲକ୍ଷ୍ମୀପତି,
ଠକା ଠକି କଥା ଛାଡ଼ ଶ୍ରୀପତି ହେ, ଠଣ ସୁନ୍ଦର,
ଠକି ଦେବାକୁ ବଳିଛି ମତି ହେ, ଠଣ ସୁନ୍ଦର।।୧୨
ଡହକ ବିକଳ ମୋର,
ଡରି ଯାଉଛକି ଦେଖି ଠାକୁର ହେ, ରଙ୍ଗାଅଧର
ଡାକି ତଣ୍ଟି ଶୁଖିଲାଣି ମୋରହେ,ରଙ୍ଗାଅଧର।।୧୩

ଢଳି ଢଳି ନାଚକେତେ,
ଢଳି ପଡୁଛି ମୁଁ ବିଷୟ ଶ୍ରୋତେହେ, ଗୋପୀରମଣ
ଡାଳେ ଚାହଁ କୃପା ନେତ୍ରେ ହେ। ଗୋପୀରମଣ।।୧୪
ନବିନ ନିରଦ କାନ୍ତି,
ନବ ଘନିଆ ମୋହନ ମୂରତି ହେ, ନଟକୁଟିଆ,
ନନ୍ଦ ଯୋଶଦା ନେତ୍ର ସମ୍ପତି ହେ, ନଟକୁଟିଆ।।୧୫
ତେରେଛେ ଚାହିଁଲେ ଥରେ,
ତରଣୀ ଲାଗିବ ଭବଜଳରେ ହେ, ତପନବଂଶୀ
ତାରି ଥିଲ ଅହଲ୍ୟା ପଥରେ ହେ, ତପନବଂଶୀ।।୧୬
ଥୟ ନହୋଇ ମୋ ମନ,
ଥରେ ଚାହିଁ ଦିଅ ଚକାନୟନ ହେ, ଗୋପୀ ମୋହନ
ଥରି ଯାଉ ସେ କାଳ ଯବନ ହେ, ଗୋପୀମୋହନ।।୧୭
ଦୟାନିଧି ଦୟାକରି,
ଦରିଆ ମଝିରୁ ନିଅ ଉଦ୍ଧରିହେ, ଦୟାସାଗର,
ଦୀନବନ୍ଧୁ ଦେଇ କୃପାବାରିହେ, ଦୟାସାଗର।।୧୮
ଧରଣି ଦନ୍ତେ ଧରିଲ,
ଧ୍ରୁବ ପ୍ରହଲାଦେ ଅଭୟ ଦେଲହେ, ଧରଣିଧର
ଧନ୍ଦାରେ ମୋତେ ମାରିଲହେ, ଧରଣିଧର।।୧୯
ନଦିଅ ପଛେ ଦର୍ଶନ,
ନରକ ତାରଣ ନୁହଁ କୃପଣ ହେ, ନର କେଶରୀ,
ନାହିଁ ମୋ ଆନ ଶରଣ ହେ, ନରକେଶରୀ।।୨୦
ପରମେଷ କର ତ୍ରାହି,
ପରା ପର ପରା ତୁମ୍ଭର ଯହିଁ, ହେ ପରମା ନନ୍ଦ,
ପର କରୁଛ ମୋତେ କିମ୍ପାଇଁ, ହେ ପରମା ନନ୍ଦ।।୨୧
ଫନ୍ଦା ମୁଁ କଲି ତୁମ୍ଭଙ୍କୁ,
ପେଲି ଦିଅ କେହ୍ନେ ଭବଜଳକୁହେ, ଫୁଲମାଳିଆ,
ଫାନ୍ଦେ ପଡ଼ିଗଲି ଅବେଳକୁ, ହେ ଫୁଲମାଳିଆ।।୨୨

ବଳିଆର ଭୂଜ ଦେଖି,
ବେଳୁହିଁ ପଶିଛି ସବୁ ଉପେକ୍ଷି, ହେ ବନବିହାରୀ
ବଳେ କୃପାକର ଚକାଆକ୍ଷୀ, ହେ ବନବିହାରୀ ।।୨୩
ଭରଷା ମୋ ନାହିଁ ଆଉ,
ଭାଗାରି ହେଲେଣି ଏ ଦୁଃଖଦାଉ, ହେ ଭାବ ବିନୋଦ,
ଭଷାଇ ନଦିଅ ଆଉ, ହେ ଭାବ ବିନୋଦ ।।୨୪
ମହିମା ଗଲା କେଣିକି,
ମାରି ଦେଉନ୍ତ ଅବୋଧନାରୀକି, ହେ ମହିମା ମେରୁ,
ମୁଁ ତ ଚାହିଁଛି କୃପା ବାରୀକି ହେ, ମହିମା ମେରୁ ।।୨୫
ଯାଉ ଏ ଜୀବନ ସରି
ଜଗନ୍ନାଥ ନାମ ହୃଦେ ସୁମରି ହେ, ଜଗମୋହନ,
ଯମ ଯନ୍ତ୍ରଣାରୁ କର ପାରିହେ, ଜଗମୋହନ ।।୨୬
ରଖ ବା ନରଖ ମୋତେ,
ରଖିଛି ଭରଷା ସେ ପଦପ୍ରାନ୍ତେହେ, ରାଜିବ ନେତ୍ର,
ରଖିବ ମୋତେଆଶ୍ରିତେ, ହେ ରାଜିବ ନେତ୍ର ।।୨୭
ଲକ୍ଷ୍ମୀପତି ଦୟାକର,
ଲୟ ରହୁ ଯେହ୍ନେ ରଙ୍ଗାପୟରହେ, ଲକ୍ଷ୍ମୀବିଳାସ,
ଲବେ ନ ଭ୍ରମୁ ମାୟା ସସାଂର ହେ ଲକ୍ଷ୍ମୀ ବିଳାସ ।।୨୮
ବଡ଼ ପ୍ରଭୁ ବୋଲିକରି,
ବଡ଼ ପାତକି ଆରତେ ଡ଼ାକିଲି ହେ, ବଡ଼ ଠାକୁର,
ବାରେ ଶରଣ ରଖିବ ବୋଲି ହେ, ବଡ଼ ଠାକୁର ।।୨୯
ଶୁଣିଲ ନାହିଁ ଗୁହାରି,
ଶବରୀ ଅଇଁଠା ଖାଇ ମୁରାରି, ହେ ରାଜିବ ନେତ୍ର,
ଶରେ ବିନାସିଲ ଲଙ୍କ ସାଇଁ , ହେ ରାଜିବ ନେତ୍ର ।।୩୦
ଷଣ୍ଢା, ବକାସୁର ମାରି,
ଷଡ଼ ରିପୁ ହେଲେଣି ମୋ ଭଗାରୀ ହେ, ସାରଙ୍ଗଧର,
ଷଡି ଯାଉଛି ଅଧମନାରୀ ହେ, ସାରଙ୍ଗଧର ।।୩୧

ସଂସାରୁ ବଞ୍ଚିତ ହେଲି,
ସବୁ ଦୁଃଖ ଯାହା ଦେଲ ସହିଲି ହେ, ଶ୍ୟାମ ସୁନ୍ଦର,
ସହି ସହି ମୁଁ ପଥର ହେଲି ହେ, ଶ୍ୟାମ ସୁନ୍ଦର । ।୩୨
ହରି ହରି ବୋଲିକରି,
ହରଯେ ଜୀବନ ଯାଉବାହାରି ହେ, ରାଧାଗୋବିନ୍ଦ
ହଟି ଯାଉ ସମନ ଭଗାରୀ ହେ, ରାଧାମୋହନ । ।୩୩
କ୍ଷମା କର ଦୋଷ ମୋର,
କ୍ଷିରାଦ୍ରି ତନୟା ଗଳାର ହାର ହେ, କ୍ଷମା ସାଗର
କ୍ଷମ ବିମଳାଯୋଡୁଛି କର ହେ, କ୍ଷମା ସାଗର । ।୩୪

୫୮

## ଜଣାଣ

ଆହେ ନିଳାଚଳ ବିହାରୀ, ଥରେ ଶୁଣ ଗୁହାରି
ଦୁଃଖାନଳେ ଜାଳି ଆଉ ନଦିଅ ସାରି । ପଦ
ମୁଁ ମହାପାତକି ହେ ନାରାୟଣ
ଅଜାମିଳଠାରୁ ସହସ୍ର ଗୁଣ
ହେ ଗଜତାରଣ, କରହେ କାରଣ
ଏ ଭବ ସାଗରୁ ମୋତେ କର ହେ ପାରି । ।୧
ମାୟା ମୋହଜାଲରେ ପଡ଼ି, ତୁମ୍ଭ ନାମ ଯାଇଛି ଭୁଡ଼ି,
କିପରି ତରିବି ଏ ମାୟା ସାଗରୁ
ଦିଅ ମୋତେ ଟିକେ କୃପାର ବାରୀ । ।୨
କରିବାକୁ ତୁମ୍ଭ ଦର୍ଶନ, ମନ ମୋର ପୁରୁଷୋତ୍ତମ
ଆଖି ନାହିଁ ମୋର ଅନ୍ଧୁଣୀ ହୋଇଣ
କିପରି ଦେଖିବି ଶ୍ରୀମୁଖ ଶିରୀ । ।୩
ସେ ସୁଖ ମୋ ଭାଗ୍ୟରେ ନାହିଁ, କଳା ମୁଖ ଦେଖିବା ପାଇଁ
ଅନ୍ତରଯ୍ୟାମି ହେ ଅନ୍ତରଭିତରେ
ଦରଶନ ଦେଇ ଦିଅ ଉଦ୍ଧରି । ।୪

ରୋଗ ଶୋକ ଦୁଃଖ ଜଞ୍ଜାଳ, ବେଳୁବେଳ ହେଲା ପ୍ରବଳ
ମୋହ ମାୟା ଜାଲ ଛିଣ୍ଡାଇ ହେ ହରି
ଜୀବ ଯାଉ ତୁମ୍ଭ ନାମକୁ ଧରି ।।୫
ତୁମ୍ଭ ନାମ ଗୀତକୁ ଗାଇ, ତୁମ୍ଭପାଦ ପଙ୍କଜ ଧ୍ୟାୟୀ
ତୁମ୍ଭନାମ ହୃଦେ ଚିନ୍ତି ହେ ଠାକୁରେ
ଏ ମାୟା ସଂସାରୁ ଯାଏ ମୁଁ ତରି ।।୬
ତୁମ୍ଭ ନାମ ଥାଉ ମୋ ତୁଣ୍ଡେ, ତୁମ୍ଭ ଛଡ଼ା ଫୁଲ ମୋ ମୁଣ୍ଡେ
ତୁମ୍ଭ କଇବଲ୍ୟ ଧରି ମହାପ୍ରଭୁ
ଏ ସମୟେ ଜୀବ ଯାଉ ବାହାରି ।।୭
ଏ ମାଗୁଣି ତୁମ୍ଭ ପୟରେ, ମାଗୁଛି ହେ ବଡ଼ ଠାକୁରେ
କହଇ ବିମଳା ଆହେ ଚକାଡ଼ୋଳା
କୃପା ନାବ ଦେଇ କରହେ ପାରି ।।୮
ଆହେ ନିଳାଚଳ ବିହାରି

୫୯

## ମଙ୍ଗଳା ସ୍ତୁତି

ଜୟମା' ଭବାନୀ ଜୟ କାତ୍ୟାୟନୀ,
ଜୟ ମା' ସର୍ବ ମଙ୍ଗଳା,
ଜୟ ମାଶଙ୍କରୀ ରାଜ ରାଜେଶ୍ୱରୀ
ଜୟ ଅଭୟା ହିଙ୍ଗୁଳା ।।୧
ଝଙ୍କଡ଼ ବାସିନୀ ସଙ୍କଟ ତାରେଣୀ
ଜନନୀ କଟକେଶ୍ୱରୀ,
ଘୋର ସଙ୍କଟରୁ ଦେବତା ମାନଙ୍କୁ
ରଖିଲୁ ମହିଂସା ମାରି ।।୨
ଚଣ୍ଡ ମୁଣ୍ଡ ନାଶି ଭୂ ଭରା ଉସ୍ୱାସି
ଚଣ୍ଡିକା ନାମ ବହିଲୁ,

ଶମ୍ଭୁ ନିଶମ୍ଭୁଙ୍କୁ କୌତୁକ ଖେଳରେ
ଅଚିରେ ବିନାଶ କଲୁ ।।୩
ଦୁଷ୍ଟ ନିବାରିଣି ଜଗତ ପାଳିନୀ
ଜଗତ ଜନନୀ ତୁହି
ଜଗତ ଜନଙ୍କ ଭିତରୁ ବାହାର କିମ୍ପାଇ
ଅନାଥ ହୋଇଲି ମୁହିଁ ।।୪
ସବୁଥିରୁ ମୋତେ ବଞ୍ଚିତ କରିବା
କେଉଁ ଯଶ ଅରଜିଲୁ,
କିଏ ଅବା ଦବା ମୁଁ ଅବା ନଦେବା
ଘେନି ଏତେ ସରି କଲୁ ।।୫
ସଂସାର ମୋହରେ ଅନ୍ଧ ହୋଇ ମୁହିଁ,
ପାସୋରିଲି ଧର୍ମ କର୍ମ,
ଜଗତ ଜନନୀ କୃପା ପାଇବାରେ
ପାରିକର ମୁଁ ଅଧମ ।।୬
ନଜାଣେ ଭକତି ନାହିଁମୋ ଶକତି
ନଜାଣଇ ସେବା ପୂଜା,
ବିନ୍ଦୁମାତ୍ର ଊଣା ହେବନି କରୁଣା
କୃପା ସାଗରି ଗିରୀଜା ।।୭
ଅଭାବ କଷଣ ବ୍ୟାଧି ଯନ୍ତ୍ରଣାରେ
ହରାଇଲି ବୁଦ୍ଧିଜ୍ଞାନ,
କର ଅନୁକମ୍ପା ଯାଉଦୂରେ ଘୁଞ୍ଚି
ଶ୍ରୀ ଚରଣେ ରହୁ ଧ୍ୟାନ ।।୮
ସର୍ବସହଣି ତୋ ସହିଷ୍ଣୁ ଗୁଣରେ
ଅପରାଧ କ୍ଷମା କରି
ଆଦରେ ମାଆଗୋ ଅଧମ ସନ୍ତାନେ
ନେବୁତୁ କୋଳେଇକରି ।।୯

ଏତିକି ମାଗୁଣି ଚରଣେ ମାଆଗୋ
କରୁଅଛି ପାଦେ ପଡ଼ି ।
ଅନ୍ତିମ କାଳରେ ଯେପରି ତୋ ନାମ
ନଯାଏ ମନରୁ ହୁଡ଼ି ।।୧୦
ଦୁର୍ଗା ଦୁର୍ଗା କହି ଦୁର୍ଗାପଦ ଧ୍ୟାୟୀ
ଯାଉ ଏ ଜୀବନ ମୋର,
କରମା' କରୁଣା ଦୀନ ଅକିଞ୍ଚନେ
ଚରଣେ ଶରଣ ତୋର ।।୧୧

୬୦

## ଜଣାଣ

କରୁଣା ସାଗର ହରିହେ, ଥରେ ଶୁଣ ଗୁହାରି,
ଶରଣ ମାଗୁଛି ଚରଣ ତଳେ, ଅବୋଧ ନାରୀ ।।୧
ଶରଣ ନଦେଇ ପାରିଲେ, ମୋତେ ଦିଅ ମରଣ,
ଦୁଃଖାନଳେ ଆଉ ଦହନା, ଭାରି ହେଲା କଷଣ ।।୨
ଏ ଭବେ ଖୋଜିଲି ପ୍ରଭୁହେ, କେହି ନାହିଁ ମୋ ସାହା
କେବଳ ଭରଷା କରିଛି ତୁମେ ଜଗତ ନାହା ।।୩
ଉଦ୍ଧରି ଥିଲାତ ମାତଙ୍ଗ ପରାଗ୍ରାହ ଗ୍ରାସରୁ
ହରିଣୀ ପାରି ହୋଇଥିଲା ପରା ବ୍ୟାଧ ତ୍ରାସରୁ ।।୪
ଦ୍ରୌପଦିର ଲଜ୍ୟା ନିବାରି ଉଡ଼ାଇଲ ପତାକା,
ସେହି ପ୍ରଭୁ ତୁମ୍ଭେ ନୁହଁକି ନଶୁଣୁଛ ମୋଡକା ।।୫
ଯାହା ଦେଇଥିଲ ପ୍ରଭୁହେ ସବୁନେଲ ଛଡାଇ,
ବାପ ମାଙ୍କର ସାଥିରେ ପୁଣି ମୋ ଚାରି ଭାଇ ।।୬
କୋଳରୁ ସନ୍ତାନ ଛଡ଼ାଇ ନେଇ ଦେଲ କାହାକୁ
ଡାକି ନଥିଲି କି ପ୍ରଭୁହେ କୋଳେ ଧରି ଶିଶୁକୁ ।।୭
ଶେଷରେ ଅନ୍ଧୁଣୀ କରିଣ ମୋତେ ଭଷାଇ ଦେଲ,
କହ ଦୟାମୟ ଏଥିରୁ କେଉଁ ଯଶ ପାଇଲ ।।୮

ତୁମ୍ଭ ଦରବାରେ ମୋ ପାଇଁ ନାହିଁ ନ୍ୟାୟ ବିଚାର,

କାହିଁ ପାଇଁ ତେବେ ହରି ହେ ରଖଜୀବନ ମୋର । ।୯

କଲବଲ ହୋଇ ଜୀବନ ଆଉ ତେବେ ରଖିବି,

ଆଉ କି ପରୀକ୍ଷା କରିବ ଅଛ ମନରେ ଭାବି । ।୧୦

ଏତେ ଦୁଃଖ ଦାଉ ସହିବା ପାଇଁ ନହିଁ ମୋ ବଳ ।

ଏ ଦୁଃଖ ସାଗର ମଝିରୁ ମୋତେ ଉଦ୍ଧାର କର । ।୧୧

ବିପ୍ର କୁଳେ ମୋର ଜନମ ମୋର ନାମ ବିମଳ ।

ପାଦେ ପଡ଼ି ଦୁଃଖ ଜଣାଏ ଶୁଣ ମୋ ଚକାଡ଼ୋଳା । ।୧୨

ନମାଗଇ ଧନ ଜନ ମୁଁ ଆଉ ଯାନ ବାହନ

ନ ଇଛଇ ରାଜ ପଦ ମୁଁ ପଉରୁଷ ସମ୍ମାନ । ।୧୩

ତୁମ୍ଭ ନାମ ଗାଇ ଗାଇ ହେ ଯାଉ ଜୀବନ ମୋର

ଏତିକି ମାଗୁଣି ଶ୍ରୀ ପଦେ ଦିଅ ଦୟା ସାଗର । ।୧୪

ସମାପ୍ତ

